# ଶ୍ରୀମଦ୍ ଭାଗବତ

# ମହାତ୍ମ୍ୟ ।

୰ ଶ୍ରୀ ଶ୍ରୀ ପଦ୍ମନାଭ ଦେବଙ୍କ ଦ୍ୱାରା ରଚିତ

ଶ୍ରୀଶ୍ରୀଶ୍ରୀ କୃଷ୍ଣଚନ୍ଦ୍ର ଗଜପତି
ନାରାୟଣ ଦେବ ମହାରାଜାଙ୍କ ଦ୍ୱାରା
ପ୍ରକାଶିତ ।

ଶ୍ରୀ ଗଜପତି ଯନ୍ତ୍ରାଳୟରେ
ଜନାର୍ଦ୍ଦନ ପଟ୍ଟନାୟକଙ୍କ ଦ୍ୱାରା ପ୍ରଥମ ବାର
ମୁଦ୍ରିତ ।
ପାରଳାଖେମୁଣ୍ଡି ।
1938
(ମୂଲ୍ୟ ଦୁଇଅଣା ମାତ୍ର



# ଶ୍ରୀମଦ୍ଭାଗବତ ମହାତ୍ମ୍ୟ ॥

ଶ୍ରୀରାଧାକୃଷ୍ଣାଭ୍ୟାଂନମଃ ।

ଜୟ ତୁ ଯଶୋଦା ନନ୍ଦନ । ବଲ୍ଲବୀ ହୃଦୟ ଚନ୍ଦନ ।
ତୁମ୍ଭ କୃପାରୁ ଏ କବର୍ଦ୍ଧ । ନିର୍ବିଘ୍ନେ ହେଉ ସମାପତ ।
ଦିନେ ଶୌନକ ମହାଋଷି । ଶ୍ରୀହରିକଥାମୃତେ ଋଷି ।
ନୈମିଷା ଅରଣ୍ୟରେ ସୂତ । ପୁରାଣ ଭାବବ ବୁଦ୍ଧିବନ୍ତ ।
ସୂତଙ୍କୁ ବିନୟ ବଚନେ । ପୁଛନ୍ତି ଅତି ତୋଷମନେ ।

ଶୌନକଉବାଚ ।

ହେ ସୂତ ମୁନିଙ୍କର ପୂଜ୍ୟ । ଅଜ୍ଞାନ ଅନ୍ଧକାର ସୂର୍ଯ୍ୟ ।
କହ ମୋ କର୍ଣ୍ଣ ରସାୟନ । ଶ୍ରୀହରି ଚରିତ ବିଧାନ ।
ବୈରାଗ୍ୟ ଜ୍ଞାନ ଭକ୍ତି ପାଇ । ବିବେକ କରୂପ ହୁଅଇ ।
କେମନ୍ତେ ମାୟା ମୋହ କ୍ଷୟ । କରନ୍ତି ବୈଷ୍ଣବ ନିଚୟ ।
ଏ ଘୋର କଳିଯୁଗେ ଜୀବ । ନିଷ୍ଟ୍ୟେ ଅସୁର ସ୍ୱଭାବ ।
ନାନା କ୍ଳେଶରେ ଏ ଆକ୍ରାନ୍ତ । ସ୍ୱଚ୍ଛନ୍ଦ ଲଭିବେ କେମନ୍ତ
ମଙ୍ଗଳମାନଙ୍କ ମଙ୍ଗଳ । କୃଷ୍ଣପ୍ରାପ୍ତିକି ଅନୁକୂଳ ।
ପାବନମାନଙ୍କ ପାବନ । ଶୀଘ୍ରରେ କହ ଏ ସାଧନ ।

ଲୋକ ସୁଖକୁ ଚନ୍ତାମଣି । ସମ୍ପତ୍ତି କଳ୍ପ ଦ୍ରୁମ ପୁଣି ॥
ଯାଚକ ଲୋକେ ଦେନ୍ତ ଯଥା । ଶ୍ରୀଗୁରୁ କୃପାକଲେ ତଥା
ଯୋଗୀନ୍ଦ୍ରେ ଯାହା ନ ଲଭନ୍ତି । କହିତେ ସେ ବୈକୁଣ୍ଠ ଦେନ୍ତି

ଶ୍ରୀସୂତଉବାଚ ।

ଏମନ୍ତ ଶୁଣି ସେହୁ ସୂତ । କହନ୍ତ ହୋଇ ହରଷିତ ।
ହେ ସଉନକ ତୁମ୍ଭ ଚତ୍ତ । ଯଦ ହୋଇଲା ପ୍ରୀତଯୁତ ।
ତେବେ ମୁ କହୁଛୁ ବସ୍ତର । ଶୁଣ ସଂଶୟ ଦୂର କର ।
ଏ ସର୍ବ ସିଦ୍ଧାନ୍ତରେ ସାର । ସଂସାର ଭୟ କର ଦୂର ॥
ଯେ ପୁଣ ଭକ୍ତିକ ବଢ଼ାଇ । ଶ୍ରୀକୃଷ୍ଣ ସନ୍ତୋଷ କରଇ ।
ସେ କଥା କହୁଅଛୁ ଗୁହ୍ୟ । ଶୁଣ ଶୌନକ ମନ ଦେଇ ।
ଏ କଳି ମହାବ୍ୟାଳଗ୍ରାସ । ଭୟ ନାଶକରେ ପ୍ରକାଶ ।
ଏମନ୍ତ ଶାସ୍ତ୍ର ଭାଗବତ । କଳିରେ ଶୁକ କଲେ ଖ୍ୟାତ ।
ଏଣୁ ଅଧିକ କଥା ହୋଇ । ମନ ଶୁଦ୍ଧିକ କେହୁ ନାହିଁ ।
ଜନ୍ମାନ୍ତେ ଅଛି ଜା ସୁକୃତ । ସେହୁ ଲଭଇ ଭାଗବତ ।
ପରୀକ୍ଷିତଙ୍କ ଅଗ୍ରତରେ । ଶ୍ରୀଶୁକ ସଭାର ଉପରେ ।
ବସି ଏ କଥା ଆରମ୍ଭନ୍ତେ । ସମସ୍ତ ଦେବ ତୋଷଚତ୍ତେ ।
ଅମୃତ କୁମ୍ଭ ଘେନ କରେ । ସଭାରେ ମିଳିଲେ ସତ୍ୱରେ ।
ଆପଣା କାର୍ଯ୍ୟରେ କୁଶଳ । ଏମନ୍ତ ସର୍ବ ସୁରକୁଳ ।
ଶୁକଙ୍କୁ ନମସ୍କାର କରି । କହିଲେ ବଚନ ବିସ୍ତାରି ।
ଏ ସୁଧା କୁମ୍ଭ ତୁମ୍ଭେ ନିଅ । ଆମ୍ଭଙ୍କୁ କଥାମୃତ ଦିଅ ।
ଏମନ୍ତେ ରଜା ଏ ସୁଧାକୁ । ପିଅନ୍ତୁ କରଣ ଶ୍ରଦ୍ଧାକୁ ।
ଆମ୍ଭେ ଶ୍ରୀଭାଗବତାମୃତ । ପିଇବୁ ହୋଇ ହରଷିତ ।
ଏବାଣୀ ଶୁଣି ଶୁକଦେବ । ମନେ ଘେନିଲେ ବେଦଭାବ ।
ଉତ୍ତମ ମଣି କାଚ ଦୁଇ । ଯେତେକ ଅନ୍ତର ହୁଅଇ ।
ହରି କଥାମୃତ ସାର । ଏ ସୁଧା ତେତେକ ଅନ୍ତର ।

ଏମନ୍ତ ବିଷ୍ଣୁର ମାନସ । ଦେବଙ୍କୁ କଲେ ଉପହାସ ॥
ଭକ୍ତି ନଦେଖି ଦେବଙ୍କର । ଶୁକ ନଦେଲେ କଥା ସାର ॥
ଏ ଯେଣୁ ଭାଗବତ କଥା । ଦେବଙ୍କୁ ନମିଳେ ସର୍ବଥା ॥
ପୂର୍ବରେ ଶୁଣି ଭାଗବତ । ମୁକ୍ତି ଲଭିଲେ ପରୀକ୍ଷିତ ॥
ଏମନ୍ତ ଦେଖି ଦେବବର । ବିସ୍ମୟ ହୋଇଲେ ମନର ॥
ସତ୍ୟଲୋକରେ ବସିକରି । ଶ୍ରଦ୍ଧାରେ ତୁଳାଦଣ୍ଡ ଧରି ॥
ଅନ୍ୟସାଧନ ଭାଗବତ । ଏ ବେନି ତୁଳିଲେ ତ୍ୱରିତ ॥
ଲଘୁ ହୋଇଲେ ସର୍ବ କର୍ମ । ଗୁରୁ ଏ ଭାଗବତ ଧର୍ମ ॥
ତା ଦେଖି ସର୍ବ ଋଷିଗଣ । ରହିଲେ ଆଶ୍ଚର୍ଯ୍ୟ ବହିଣ ॥
ଶ୍ରୀହରିରୂପ ଭାଗବତ । ପଠନ ଶ୍ରବଣ ତ୍ୱରିତ ॥
ଭୂଲୋକ ବୈକୁଣ୍ଠ ଫଳକୁ । ଦେଉଛନ୍ତି ଆଣିଲେ ମନକୁ ॥
ଏ ଶାସ୍ତ୍ର ସପ୍ତାହ ଶ୍ରବଣେ । ମୁକ୍ତି ଦେଉଛନ୍ତି ତତକ୍ଷଣେ ॥
ସନକ ଆଦି ଦୟା ଚିତ୍ତେ । ପୂର୍ବେ ଜେ ନାରଦ ଅଗ୍ରତେ
କହିଲେ ଏ ଶୁଦ୍ଧ ଚରିତ । ନାରଦ ହେଲେ ହରଷିତ ॥
ବ୍ରହ୍ମାଙ୍କ ମୁଖରୁ ନାରଦ । ଶୁଣିଲେ ହେନେ ଏ ସମ୍ବାଦ ॥
ସପ୍ତାହ ଶ୍ରବଣର ବିଧି । କହିଲେ ସନକାଦି ବୋଧି ॥୫୩॥

ଶୌନକଉବାଚ ।

ଶୌନକ କହନ୍ତି ଶୁକଙ୍କୁ । କଥାଏ ଅଛି ପୁଚ୍ଛିବାକୁ ॥୫୪
ହଳନ୍ଦ ପ୍ରିୟ ଯେ ଅଟନ୍ତି । ସଦା ଅସ୍ଥିର ଚିତ୍ତ ବୃତ୍ତି ॥୫୫॥
ଏ ବିଧି ଶ୍ରବଣୁ ନାରଦ । କହେରୁ ପାଇଲେ ଆନନ୍ଦ ॥
ସନକ ଆଦି କେଉଁଠାରେ । ମିଳିଲେ ନାରଦ ସଙ୍ଗରେ ॥

ସୂତଉବାଚ ।

ଏମନ୍ତେ ଶୌନକଙ୍କ ବାଣୀ । ସୂତ କହିଲେ ତାହା ଶୁଣି
ଶୁଣହେ କହିବା ତୁମ୍ଭଙ୍କୁ । ଯେ ଭକ୍ତି ମୁକ୍ତ କଥା ତାଙ୍କୁ ॥

ଶୁକ ବଶିଷ୍ଠ କପି ଗୃପ୍ତ । ମତେ ଯା କହିଛନ୍ତି ତତ୍ତ୍ୱ ।୬୦।
ବିଶାଳପୁରେ ଏକ ଦିନେ । ସେସ୍ତୁର ସନକାଦିମାନେ ୬୧
ନିର୍ମ୍ମଳ ସ୍ୱରୂପ କୁବନ୍ତି । ସାଧୁ ସଙ୍ଗମ ଅର୍ଥେ ତନ୍ତି ।୬୨।
ପ୍ରବେଶ ହୁଅନ୍ତେ ନାରଦ । ଦେଖିଣ ଲଭିଲେ ଆନନ୍ଦ ।

କୁମାରଉବାଚ ।

ସନକ ଆଦି ସେ କୁମାରେ । କହନ୍ତି ନାରଦ ଆଗରେ ।
କେତେହୁ ବିମୁଖ ହୋଇଣ । ରହିଛ ଚିନ୍ତାଭରେ ପୁଣ ୬୪
ଆସିଲ କେଉଁଠାରୁ ପୁଣି । ଚକ୍ଷୁଛ କାହିଁ କହ ମୁନି ।୬୫।
ତୁମ୍ଭେ ଦରିଦ୍ର ଜନ ପରି । ବହିଛ ଚିତ୍ତ ଶୂନ୍ୟ କରି ୬୬
ବିମୁକ୍ତ ସଙ୍ଗ ଯେ ତୁମ୍ଭର । ଏ କଥା ନୁହଇ ପ୍ରଚୁର ୬୮
କହ ଅମ୍ଭଙ୍କୁ ଏ କାରଣ । ହେଉ ସନ୍ଦେହ ନିବାରଣ ୬୯

ନାରଦଉବାଚ ।

ଶୁଣି ନାରଦ କୁମାରଙ୍କୁ । କହିଲେ ଉତ୍ତମ ବାକ୍ୟକୁ ୭୦
ଅତି ଉତ୍ତମ ଏ ଭୂଲୋକ । ଏମନ୍ତ କରି ମୁଁ ବିବେକ ୭୧
ଭୂମଣ୍ଡଳକୁ ଆସି ମୁହିଁ । ଦେଖିଲି ସର୍ବ ତୀର୍ଥ ତହିଁ ।୭୨।
ପୁଷ୍କର ପ୍ରୟାଗ କାଶୀରେ । ଆବର ଗୋଦାବରୀ ତୀରେ ।
ସେତୁବନ୍ଧରେ ହରି କ୍ଷେତ୍ରେ । ଶ୍ରୀରଙ୍ଗ ତୀର୍ଥ କୁରୁକ୍ଷେତ୍ରେ
ଏ ଆଦି ତୀର୍ଥମାନଙ୍କରେ । ଭ୍ରମଣ କଲି ନିରନ୍ତରେ ।
କେଉଁଠାରେ ଅବା ମୁହିଁ । ହୃଦୟେ ସନ୍ତୋଷକୁ ବହି ।
କିଛି ମୁଁ ନଦେଖିଲି ସୁଖ । ଏ ଖେଦ ହୋଇଲି ବିମୁଖ ।
ଅଧର୍ମ୍ମ ସହାୟ ଯେ କଳି । ଭୂମିକି ଦେଲାନି ଏ ଗିଳି ।
ଏ କଳିଯୁଗେ ଦେଲା ଦାନ । ତପସ୍ୟା ଶୁଚି ସତ୍ୟ ପୁଣ ।
ଏ ଆଦି ଧର୍ମ ନାହିଁ କିଛି । କେବଳ ଏତେ ମାତ୍ର ଅଛି ।
ନାନାପ୍ରକାରେ ମିଥ୍ୟା ଭାଷି । କୁଟୁମ୍ବ ଉଦରକୁ ପୋଷି ।

ଏମନ୍ତ ଭୁଞ୍ଜ ପ୍ରାଣିମାନ । ଅଛନ୍ତି ଧରିଣ ଜୀବନ ।।୮୨।।
ଅପନ୍ତ ମୂର୍ଖ ମନ୍ଦ ମତି । ସେ ପୁଣ ଅଳପ ସମ୍ପତ୍ତି ।।୮୩।।
ଔଷଧ ଉପଦ୍ରବ୍ୟ ବନ୍ତ । ପାଷାଣ ଅଂଶ ଯେ ଅଶକ୍ତ ୮୪
ଯେ ବଇରାଗ୍ୟକୁ ଆଚରି । ସେ ସବୁ ପରିଗ୍ରହ କରି ।
ଗୃହରେ ସୁରତି ପ୍ରଧାନ । ଟାଳନ ଢଏ ବୁଛେ ଧାନ ।
କନ୍ୟା ନିସ୍ତେ ଲୋଭ ବଳି । ଗୃହସ୍ଥ ଖରକାରେ କଳି ।
ଆଶ୍ରମ ତୀର୍ଥ ପୁଣ୍ୟ ନଦୀ । ଯବନେ ଦେଲେଣି ନବୋଧି ।
ଅନେକ ଦେବଙ୍କର ବାସ । କଲେକ ଦୁଷ୍ଟଜନେ ନାଶ ।
ଯେ ଯୋଗବନ୍ତ ସିଦ୍ଧ ସ୍ୱାମୀ । ଉତ୍ତମ ନିନ୍ଦା ଅଭିମାନୀ ।
ଏ କଳି ଯୁଗ ଦାବାନଳେ । ଭସ୍ମ ହେଲେଣି ସର୍ବେ ତାଳେ
ଅଟ୍ଟାଳି ସର୍ବ ଦେଶେ ଶୂନ୍ୟ । ବ୍ରାହ୍ମଣେ ମଙ୍ଗଳରେ ହୀନ ।
ହସ୍ତୀକୁ ହୀନ ହେଲେ ନାସ୍ତି । ଭଳିରେ ଏରୂପେ ପ୍ରଚରି
ଏମନ୍ତେ ମହୀକି ଭ୍ରମଣ । ଦେଖି ଏ କଳି ଦୋଷ ଗୁଣ ।
ଶ୍ରୀରାଧାକୃଷ୍ଣ କେଳି ସ୍ଥାନେ । ହେଲି ଯମୁନା ତଟ ବନେ ।
ଦେଖିଲି ଆଶ୍ଚର୍ଯ୍ୟ ତହିଁରେ । କହିବା ଶୁଣ ମୁନିବରେ ।
ଅପନ୍ତ ଖେଦ ମନେ ବହି । ଏକ ତରୁଣୀ ପୁଣି ତହିଁ ।
ବସିଛି ତାହାଙ୍କ ପାଶରେ । ଅଛନ୍ତି ବେନି ବୃଦ୍ଧ ନରେ ।
ନିଶ୍ୱାସ ଅତି ଖରେ ଗ୍ରସ୍ତ । ଅଜ୍ଞାନେ ଅଛନ୍ତି ସେ ପଡ଼ି ।
ସେ ବେନି ବୃଦ୍ଧ ଅଗ୍ରତରେ । ତରୁଣୀ ହେବେ ନିରନ୍ତରେ
କାନ୍ଦିଣ ତନ୍ତୁ ପ୍ରବୋଧଇ । ଦଣ୍ଡ ଦଣରେ ନରେଖଇ ।
ଆପଣା ବସନ ଜନକୁ । ପୁନଃ ପୁନଃରେ ଟାନ୍ତି ତାକୁ ।
ଶତ ସଂଖ୍ୟକ ନାସ୍ତ୍ରଗଣ । ତାହାଙ୍କୁ ବୋଧନ୍ତି ଦେଖିଣ ।
ଦୂରରେ ଦେଖିଣ ମୁଁ ତାଙ୍କୁ । ଗୌରବେ ଗଲି ନିକଟକୁ
ମୋତେ ଦେଖିଣ ସେ ଅବଳା । ଉଠି ଯେ ବିନୟେ କହିଲା

ବାଳୋବାଚ ।

ହେ ସାଧୁ କ୍ଷଣେ ମାତ୍ର ରହ । ମୋର ଏ ସନ୍ତାପକୁ ଦହ
ତୁମ୍ଭଙ୍କୁ ନେତ୍ରେ ଯେ ଦେଖନ୍ତି । ସକଳ ପାତକ ନାଶନ୍ତି ।
ତୁମ୍ଭର ବଚନ ଅମୃତ । ଶୁଣି ମୋ ଦୁଃଖ ହେବ ହତ ।
ଯେ ଜନ ସ୍ୱଭ୍ୟ କରିଥିବ । ତୁମ୍ଭଙ୍କୁ ନୟନେ ଦେଖିବ ।

ନାରଦଉବାଚ ।

ଶୁଣି କହନ୍ତି ମୁନିବର । ବହଇ ବିସ୍ମୟ ମନର ।୧୧୦।
କେ ତୁମ୍ଭେ କେତା ଦେଶ ଏଥୁ । ପଦ୍ମଲୋଚନା ଗଣ କେନ୍ଥୁ
ତ୍ୱେ ଦେଖୀ ତୋ ଦୁଃଖ କାରଣ । କହ ତୁ ବିସ୍ତାର ଆପଣ

ଭକ୍ତ୍ୟୁବାଚ ।

ନାଳକ ହୋଇ ଏହା ଶୁଣି । ଭକତି ବୋଲ ତାକୁ ଭଣି
ସେହୁ ମୁ ଏ ବେନ ମୋ ପୋଏ । ଜ୍ଞାନ ବୈରାଗ୍ୟ ନାମବହେ
କାଳ ଯୋଗରୁ ଜରାକ୍ରର । ହୋଇଲେ ଏହାଙ୍କ ଶରୀର ।
ଏଥୁ ଗଙ୍ଗାଦି ନଦୀମାନେ । ଅଛନ୍ତି ମୋହର ସେବନେ ।
ତଥାପି ଦେବଙ୍କ ସେବାରେ । ମଙ୍ଗଳ ନୋହିଲା ମୋ ବାରେ
ହରଷ ଚଢେ ତପୋଧନ । ଏବେ ମୋ ବାରତାକୁ ଘେନ
ବହୁତ ବାରତା ମୋ ଅଛି । ତା ଶୁଣି ଲଭ ସୁଖ କଚ୍ଛି ।
ଜନମି ଦ୍ରାବିଡ ଦେଶରେ । ବଢ଼ିଲି ପୁଣି କର୍ଣ୍ଣାଟରେ ।
କେବଣ କେବଣ ରାଜ୍ୟରେ । ଶୀର୍ଣ୍ଣ ମୁ ହୋଇଲି ଗୁର୍ଜ୍ଜରେ
ଏ ମହା ଘୋର କଳିକାଳେ । ପାଷାଣ୍ଡଗଣ ତହି ବଳେ ।
ଖଣ୍ଡିଲେ ମୋହର ଅଙ୍ଗକୁ । ଏଣୁ ଲଭିଲି ଦୁର୍ବଳକୁ ।
ଏ ବେନି ପୁତ୍ରଙ୍କୁ ସଙ୍ଗତେ । ଯେବେ ଗମିଲି ଜାଣ ଚିତେ ।
ଆସି ପ୍ରବେଶ ବୃନ୍ଦାବନେ । ହୋଇଲି ତରୁଣୀ ସମାନେ ।

ଏ ମନୋହର ରୂପ ପାଇ । ଏଥିରେ ଅଛଇ ମୁଁ ରହି ॥
ଏ ବେନ ପୁତ୍ରେ କ୍ଲେଶ ପାଇ । ଶ୍ରମରେ ରହିଛନ୍ତି ଶୋଇ
ଏ ସ୍ଥାନ ଛାଡ଼ି ବିଦେଶକୁ । କରୁଛି ମୁହିଁ ଗମନକୁ ୧୬୭
ପୁତ୍ରଙ୍କ ବୃଦ୍ଧ ଭାବ ଦେଖି । ଏ ଦୁଃଖେ ହେଉଅଛି ଦୁଃଖୀ
କହେରୁ ହୋଇଲି ତରୁଣୀ । ବୃଦ୍ଧ ହୋଇଲେ ପୁତ୍ର ବେନି
ଏ ଆମ୍ଭ ତିନିଙ୍କ ସହିତ । କି ବିପରୀତ ହେଲା ହେଜ ॥
ଜନନୀ ହୁଅଇ ଜରଣୀ । ପୁତ୍ରେ ତରୁଣ ହୋଇଥାନ୍ତି ॥
ଏ ବିନା ସଂସାରେ ଘଟିତ । ଏଣୁ ବ୍ୟାକୁଳ ଶୋକ ଚିତ୍ତ ॥
ହେ ଯୋଗନିଧି ମୁନିବର । କହ ହେ କାରଣ ଏହାର ॥

ନାରଦଉବାଚ ।

ଶୁଣି ନାରଦ ମହାମୁନି । ବୋଲନ୍ତି ଶୁଣରେ କାମିନୀ ॥
ତୋର ସକଳ କର୍ମ ମୁହିଁ । ଆମ୍ଭରେ ଜ୍ଞାନରେ ଦେଖଇ ॥
ଏଥିରୁ ବିଷାଦ ନକର । ହରି କରିବେ ଶୁଭ ତୋର ॥

ସୂତଉବାଚ ।

ସୂତ ପୌରାଣିକ ସର୍ବଗେ । କହନ୍ତି ଶୌନକର ଆଗେ ॥
କ୍ଷଣକେ ଏହା ଜ୍ଞାନେ ଜାଣି । ନାରଦ କହିଲେ ଏ ବାଣୀ
ହେ ବାଳେ ସାବଧାନେ ଶୁଣ । ଏ କଳି ଅଟଇ ଦାରୁଣ
ଏହେତୁ ତପ ସଦାଚାର । ଯୋଗମାର୍ଗାଦି ଯେ ଅବର ॥
ଲୋପ ହୋଇଲେ ଅଯନ୍ତରେ । ଜନ ଅସୁର ଧର୍ମ ଧରେ
ନାସ୍ତିକ ଦୁଷ୍ଟ କର୍ମ କରି । ରହିଲେ କଳିକି ଆବୋରି ॥
ଏ ଯୁଗେ ସନ୍ଥଜନେ କ୍ଷୀଣ । ଅସନ୍ତ ହୁଅଇ ହରଷ ୧୭୪
ଯେ ଏଥି ଧର୍ମ ଧରି ରହି । ତାକୁ ପଣ୍ଡିତ ବୋଲି କହି
ଏ ଭୂମି ଛାଡ଼ି ବରଷରେ । ଶେଷଦେବଙ୍କୁ ଶିରକରେ ॥

ଛୁଇଁ ସ୍ପର୍ଶ ବା ଯୋଗ୍ୟ ନୋହି । ଏଥୁ ମଙ୍ଗଳ ଅବା କାହିଁ
ଏ ଯେଉଁ ପୁତ୍ରଙ୍କର ତୁଲେ । ଘୋଟେ କେ ନସ୍ୱହାନ୍ତ ଭଲେ
ଅନୁରାଗରେ ଅନ୍ଧ ଜନେ । ଛୁଇଁଲେ ତୁମ୍ଭଙ୍କୁ ବହୁନେ ।
ତେଣୁ ଜର୍ଜ୍ଜର ଦେହ ବହି । ପୂର୍ବରେ ରହିଥିଲୁ ତୁହି ।
ଲଭି ଶ୍ରୀବୃନ୍ଦାବନ ଧାମ । ହୋଇଲ ନବନାସ୍ତି ସମ ॥ ୧୬୧
ତେଣୁ ଧନ୍ୟ ଏ ବୃନ୍ଦାବନ । ଯହିଁରେ ଭକ୍ତି ଶୋଭିବନ ।
ଟେ ନେବନ ନନ୍ଦନକୁ କେହି । ଯେଉଁନବା ଲେକ ଏଥି ନାହିଁ
ଆପଣା ସୁଖେ ସେ ଶମ୍ଭୁନେ । ଅଛନ୍ତ ନଭ୍ଳ ଟେଡ଼ା ମନେ

ଭକ୍ତିରୁବାଚ ।

ଭକ୍ତି କହନ୍ତ ମୁନିବର । ଶୁଣନ୍ତୁ ମୋହର ଏ ଗୀର ।
ସେ ପରୀକ୍ଷିତ ମହୀଶ୍ୱର । ଅଶୁଚ କଳି ଏହି ଘୋର ।
କହେତୁ ଏହାକୁ ସ୍ଥାପିଲେ । ଶୁଣି ବିସ୍ମୟ ହୋଇ ଭଲେ
ଏ ମହା ଘୋର କଳି ଆସି । ରହନ୍ତେ ଭୂମିଙ୍କ ଗରାସି ।
ସକଳ ମହାତ୍ମ୍ୟ ସାର । ଏଥିରେ ହେଲା ଅଗୋଚର ।
ଦୟାସାଗର ଭଗବାନ । କରୁଥ ଅଧର୍ମସମାନ ॥ ୧୭୦ ॥
କଲେ ଏ ସଂଶୟକୁ ମୋର । ଛୁଡ଼ାଅ ବେଗେ ମୁନିବର ।
ତୁମ୍ଭ ବଚନ ଅମୃତକୁ । ଶୁଣି ମୁଁ ପାଉଛି ସୁଖକୁ ।

ନାରଦଉବାଚ ।

ଶୁଣିଣ କହନ୍ତ ନାରଦ । ହୃଦୟେ ଧର ସେ ଆନନ୍ଦ ।
ଯହିଁ ପୁଛିଲ ମୁନିବର । ସ୍ନେହରେ ଏ ଶ୍ରବଣ କର ।
ସକଳ କହିବ ତୁମ୍ଭଙ୍କୁ । ଶୁଣି ନାଶିବ ବିଷାଦକୁ ।
ଯେଉଁଦିନ କାଳେ ଭଗବାନ । ଭୂମିକ ତେଜିଲେ ବହନ ।
ସେହିଦିନଠାରୁ କଳି ଆସି । ସବୁ ସାଧନ ଦେଲା ଗ୍ରାସି ।

ସେହି ମନ୍ତ୍ରୀବର୍ଗ ପରୀକ୍ଷିତ । ହୋଇ ବିଜୟରେ ସାକ୍ଷାତ ॥
ଏ କଳିଯୁଗକୁ ଦେଖିଲେ । ସେ କଳି ଶରଣ ପଶିଲେ ॥
ସେ ରାଜା ଭୃଙ୍ଗ ପରସାର । ଭୁଞ୍ଜାଇ ଏ ଯେଉଁ ତାହାର ॥
କରିବା ନାହିଁ ତ୍ରାଣ କ୍ଷୟ । ଏମନ୍ତେ କଲେ ସେ ନିଶ୍ଚୟ ॥
ତପସ୍ୟା ସମାଧି ଯୋଗରେ । ଯେ ଫଳ ମିଳେ ଏ ସଂସାରେ
ଉତ୍ତମ ହରି କୀର୍ତ୍ତନରେ । ଲଭନ୍ତି ସେ ଫଳକୁ ନରେ ॥
ନରପ କଳିର ଆଗ୍ରହ । ଦେଖି ପରୀକ୍ଷ ଦଣ୍ଡଧର ॥
କଳିଯୁଗରେ ଜନ୍ମ ଜନେ । ଶୁକଦେବ ଏ ଖଳ ମନେ ॥
ସ୍ଥାପିଲେ ଅତି ଦୟାକର । ନାରଦ କହିଲେ ବିସ୍ତାର ॥
ଏବେ କୁତ୍ସିତ ଆଚରଣ । ହେତୁରୁ ସାର ଦ୍ରବ୍ୟ ଗଣ ॥
ଭୂମିରୁ ସର୍ବ ହେଲେ ନାଶ । ଆଦର ପଦାର୍ଥ ବିଶେଷ ॥
ବୀଜ ବିହୀନ ତୁଷ ଯଥା । ହୋଇ ରହିଲେ ସର୍ବେ ତଥା ॥
ଅଳପ ପଦାର୍ଥ ଲୋଭରେ । ବ୍ରାହ୍ମଣମାନେ ପ୍ରତି ଘରେ ॥
ପ୍ରତି ଜନରେ ଭାଗବତ । କହିଲେ ହୋଇ ହରଷିତ ॥
ଏ ଯୋଗଗଲା କଥାସାର । ଲୋକେ ତା କଲେ ଅନାଦର
ଅତି ନାସ୍ତିକ ଉଗ୍ରକର୍ମୀ । ନାରକୀ ଜନେ ତୀର୍ଥ ସୀମା ॥
ଯହିଁ ରହିଲେ ବଳେ ମାତ୍ର । ତୀର୍ଥରୁ ସାର ଗଲା ତନ୍ତ୍ର ॥
କାମ କ୍ରୋଧାଦି ଲୋଭ ମୋହ । ତୃଷ୍ଣାରେ ବ୍ୟାକୁଳିତ ଦେହ
ଏମାନେ ତପ କରିବାରୁ । ତପ ସାର ଗଲା ସଂସାରୁ ॥
ହୃଦୟ ଜୟ ନୋହିବାରୁ । ଲୋଭରେ ପାଷାଣ୍ଡ ସଙ୍ଗରୁ ॥
ଶାସ୍ତ୍ର ଅଭ୍ୟାସ ନୋହିବାରେ । ଅତି ଦାମ୍ଭିକ ହୋଇ ନରେ
ଜଗତ ଧ୍ୟାନ ଯୋଗ ଫଳ । ଯିବାରୁ ହୋଇଲା ବିଫଳ ॥
ପଣ୍ଡିତେ ମହିଷିର ପର । କଳତ୍ର ତୁଲରେ ବିହାର ॥
ପୁତ୍ର ଜନ୍ମରେ ହେଲେ ରତ । ଏଣୁ ମୁକତ ବିବର୍ଜିତ ॥
ସଂପ୍ରଦାୟ ସହିତ ହୋଇ । ବୈଷ୍ଣବ ଏଥି କେହି ନାହିଁ ॥

ଏମନ୍ତ ହୋଇ ସର୍ବଠାରେ । ପଦାର୍ଥ ସାର ଗଲା ଦୂରେ ।
ଏ କଳିଯୁଗ ଧର୍ମ ଯେହୁ । ତାହାର ଏଥି ଦୋଷ ନାହୁଁ ।
ଏ ବେନ ପ୍ରଭୁ ଭଗବାନ । ହୃଦ ରହିଲେ ସନ୍ନିଧାନ ୧୯୫

ସୂତଉବାଚ ।

ସୂତ କହନ୍ତି ସ୍ନିଗ୍ଧ ମନେ । ଶୌନକ ମୁନି ସନ୍ନିଧାନେ ।
ଏମନ୍ତ ନାରଦଙ୍କ ବାଣି । ଆଶ୍ଚର୍ଯ୍ୟ ହେଲା ଭକ୍ତି ଶୁଣି ।
ପୁଣି ସେ କହନ୍ତି ଭକତ । ଧନ୍ୟ ନାରଦ ମହାଯତ ।
ମୋହର ସୌଭାଗ୍ୟ ବଶରେ । ତୁମ୍ଭେ ମିଳିଲ ମୋ ପାଶରେ
ସାଧୁମାନଙ୍କ ଦରଶନ । ସଂସାରେ ସକଳ ସାଧନ ।୨୦୦।
ଆଜହୁଁ ମୋହର ଯେମନ୍ତେ । ହୋଇବ ତୁମ୍ଭେ ସେହି ମତେ
କହ ଆପଣ ଏ ଉପାୟ । କେ ତୁମ୍ଭ ବନ୍ଧୁ ମୋ ସୁହାୟ ।
ହେ ମୁନି ତୁମ୍ଭେ ଯୋଗେଶ୍ୱର । କ କଥା ଅସାଧ୍ୟ ତୁମ୍ଭର ।
କେବଳ ତୁମ୍ଭର ବଚନ । ପ୍ରହ୍ଲାଦ କଲା ଆକଳନ ୨୦୪
ଜଗତ ମାୟାକୁ ଜିଣିଲେ । ଶ୍ରୀହରି କରୁଣା ଅର୍ଜିଲେ ।
ଯାହାଙ୍କ କରୁଣା ମାତ୍ରକେ । ଧ୍ରୁବ ରହିଲେ ଧ୍ରୁବ ଲୋକେ
ଏ ଯେନ ସର୍ବ ଲୋକଙ୍କର । ସକଳ ମଙ୍ଗଳ ଆକର ।
ପୁଣି ଯେ ବ୍ରହ୍ମାଙ୍କ କୁମର । ତୁମ୍ଭଙ୍କୁ ମୋର ନମସ୍କାର ।
ସେ ମୁନିଜନଙ୍କର ପାଦେ । ଜନେ ଶରଣ ପଶ ମୋଦେ ।
ଭବବନ୍ଧନ ପାର ହେବ । ଭଣିଲେ ପଦ୍ମନାଭ ଦେବ ।

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ ଶ୍ରୀଭାଗବତ ମହାତ୍ମ୍ୟେ ଭକ୍ତି ନାରଦ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ ।



# ଦ୍ୱିତୀୟ ଅଧ୍ୟାୟ ॥

## ନାରଦଉବାଚ ।

ଶୁଣି ନାରଦ ମୁନିବର । କହନ୍ତି ଭକତି ଆଗର ॥ ୧ ॥
ବୃଥର୍ଥେ ମନେ ଖେଦ ଧର । କେତେହେବୁ ଚିନ୍ତାରେ ଆତୁର
ଶ୍ରୀକୃଷ୍ଣ ଚରଣ ପଙ୍କଜ । ସୁମର ସବୁ ଦୁଃଖ ତେଜ ॥ ୩ ॥
ଯେ କୁରୁଙ୍କର ସଭାତଳେ । ଦ୍ରୁପଦ ସୁତାଙ୍କୁ ରଖିଲେ ।
ପାଳିଲେ ଗୋପ ପୁର ନାରୀ । ଆବର ଅଛନ୍ତି ସେ ହରି ।
ହେ ଭକ୍ତି କୃଷ୍ଣ ପ୍ରୀତି କର । ପ୍ରାଣରୁ ଅଧିକ ଆଦର ।
ସାତଙ୍କ ଗୃହେ ତୁମ୍ଭେ ଥାଇ । ଡାକିଲେ ଯାନ୍ତି ହରି ତହିଁ
ସତ୍ୟାଦ୍ରି ଏ ତିନ ଯୁଗରେ । ଜ୍ଞାନ ବୈରାଗ୍ୟ ମୁକ୍ତି କରେ ।
କେବଳ ଭକ୍ତି ଏ କଳିରେ । ବ୍ରହ୍ମ ସାଯୁଜ୍ୟ ମୁକ୍ତି କରେ
ଶ୍ରୀହରି କର ଏ ନିଶ୍ଚୟ । ମଙ୍ଗଳ ସ୍ୱରୂପ ଚିନ୍ମୟ ॥ ୧୦ ॥
ପରମ ଆନନ୍ଦ ମୂରତି । ସୁନ୍ଦର କର କୃଷ୍ଣ ପ୍ରୀତି ॥ ୧୧ ॥
ଏମନ୍ତ କରଣ ତୁମ୍ଭଙ୍କୁ । ହରିଲେ ବହୁ ସନ୍ତୋଷରୁ ।
କର ଯୋଡଣ ଏକ ଦିନେ । ପୁଚ୍ଛିଲେ ହରି ସନ୍ନିଧାନେ
ସେ କାଳେ ପ୍ରଭୁ ଭଗବାନ । ଆଜ୍ଞାକୁ ବହିଲେ ବହନ ।
ମୋହର ଯେଉଁ ଭକ୍ତମାନେ । ତାହାଙ୍କୁ ପୋଷ ତୋଷମନେ
ଏ କଥା କଲେ ଅଙ୍ଗୀକାର । ପ୍ରସନ୍ନ ହୋଇ ଚକ୍ରଧର ।
ମୁକ୍ତିଙ୍କି ଦାସୀ କରଦେଲେ । ଜ୍ଞାନ ବୈରାଗ୍ୟ ଦେଲେ ତୁଲେ
ସ୍ୱରୂପେ ବୈକୁଣ୍ଠେ ରହି । ଭକ୍ତଙ୍କୁ ପୋଷୁଅଛ ତହିଁ ।
ଭୂମିରେ ଛାୟା ରୂପ ଧର । ଭକ୍ତଙ୍କ ଶୋକ ନାଶ କର ।
ଜ୍ଞାନ ବୈରାଗ୍ୟ ମୁକ୍ତି ସଙ୍ଗେ । ଯେଉଁ ମିଳିଲେ ମତେ ରଙ୍ଗେ
ସତ୍ୟ ତ୍ରେତା ଦ୍ୱାପର ପର୍ଯ୍ୟନ୍ତେ । ଏଥି ରହିଲେ ମୋଦ ଚିତ୍ତେ
ପାଷାଣ୍ଡ ଜନଙ୍କ ପୀଡାରେ । ସେ ମୁକ୍ତି ଏ କଳିଯୁଗରେ ।

କ୍ଷୀଣ ହୁଅନ୍ତେ ଶୀଘ୍ରେ ତାଙ୍କୁ । ପେସିଲେ ବୈକୁଣ୍ଠ ପୁରକୁ
ଏଥି ତୁମ୍ଭର ସୁତ ବସେ । ସେ ମୁକ୍ତି ପୁଣି ଯାଇ ଅସେ ॥
ଜ୍ଞାନ ବୈରାଗ ପୁତ୍ର କର । ପାଶରେ ରଖିଛ ତୁମ୍ଭର ॥
କଳିରେ ମନ୍ଦ ଜନ ମାନେ । ଉପେକ୍ଷା କରନ୍ତେ ବହୁନେ
ଜ୍ଞାନ ବୈରାଗ୍ୟ ପୁତ୍ର ବେନି । ରହିଲେ ବୃଦ୍ଧ ଦେହ ଘେନି
ତଥାପି ଚିନ୍ତା ଶୁଣ ତୁମ୍ଭେ । ଉପାୟ କରୁଅଛୁ ଆମ୍ଭେ ॥
ଏ କଳିଯୁଗ ସମ ନାହିଁ । ଶୁଣ ଶରଦ ଚନ୍ଦ୍ର ମୁହିଁ ॥୨୯॥
ସ୍ଥାପନା କରିବା ତହିଁରେ । ପ୍ରତି ଜନରେ ପ୍ରତି ଘରେ ॥
ଅନ୍ୟ ଧର୍ମକୁ ତିରସ୍କାର । ମହା ଉତ୍ସବ ପୁରସ୍କାର ॥୩୦॥
କରୁଣ ଯେବେ ମଞ୍ଚ ନରେ । ବର୍ତ୍ତିବେ ନାହିଁ ତୋ ସେବାରେ
ତେବେ ଜାଣିବ ତେଉଁ ମୁହିଁ । ଶ୍ରୀହରି ସେବକ ନୁହଇ
ତୁମ୍ଭଙ୍କୁ ଘେନି ଯେବେ ନରେ । ନାଚନ୍ତି ଅତ୍ୟନ୍ତ ଶ୍ରଦ୍ଧାରେ
ପାପି ହୋଇଲେହେ ଭସ୍ମ ତେଜି । ରହନ୍ତି ବୈକୁଣ୍ଠରେ ମଜି
ଯେବଣ ଜନଙ୍କ ମାନସେ । ପ୍ରେମ ରୂପରେ ଭକ୍ତି ବସେ ॥
ସେହୁ ଅମଳ ମୂର୍ତ୍ତି ଧରେ । ଯମ ନ ଦେଖନ୍ତି ସ୍ୱପ୍ନରେ ॥
ପ୍ରେତ ପିଶାଚ ଦୈତ୍ୟ ଗଣ । ଆବର ରାକ୍ଷସ ଯେ ପୁଣ ॥
ଯେ ଜନ ଭକ୍ତି ସଂପାଦନ୍ତି । ତାହାଙ୍କୁ ଛୁଇଁ ନ ପାରନ୍ତି ॥
ତପସ୍ୟା ବେଦ ଜ୍ଞାନ ମାନ । ଏହିମାନଙ୍କେ ଭଗବାନ ॥
ସାଧ୍ୟ ନୁହନ୍ତି କଦାଚନ । କେବଳ ଭକ୍ତି ସାଧ୍ୟ ସତ୍ୟ ॥୪୧
ଏଥିକି ଗୋପ ନାରୀମାନେ । ସାକ୍ଷି ଅଛନ୍ତି ଘେନ ମନେ ॥
ମାନବ ସହସ୍ର ଜନ୍ମରେ । ପ୍ରୀତି ଜନ୍ମଇ ଭଗତରେ ॥୪୩
କଳିରେ ଭକ୍ତି ପ୍ରମାଣ । ଭକ୍ତିରେ କୃଷ୍ଣ ଅଗ୍ରେ ଜାଣ ॥
ଏ ତିନି ଭୁବନେ ଜେ ଭକ୍ତି । ବିଷ୍ଣୁରେ ଦ୍ରୋହ ଆଚରନ୍ତି
ସେମାନେ ହୋନ୍ତି ଅନ୍ତ ଶୀର୍ଣ୍ଣ । ନରକେ ପଡନ୍ତି ବହୁନ ॥
ସବରେ ଭକ୍ତି ନନ୍ଦାକର । ଦୁର୍ବାଶା ହେଲେ ଦୁଃଖ ଧାର

କି କାର୍ଯ୍ୟ ବ୍ରତ ତୀର୍ଥ ଯୋଗେ । ଜ୍ଞାନାଦି ନାନା ମନ୍ତ୍ର ଯୋଗେ
କେବଳ ସଂସାରେ ଏ ଭକ୍ତି । କହୁଛନ୍ତି ଦିଅନ୍ତି ସେ ମୁକ୍ତି ।
ଏମନ୍ତ ନାରଦ ମୁଖରୁ । ନିଜ ନିର୍ଣ୍ଣୟ ଶୁଣି ତାରୁ । ୫୦ ।
ସର୍ବାଙ୍ଗ ପୁଷ୍ଟ ହୋଇ ଭକ୍ତି । ନାରଦ ମୁନିଙ୍କି ପୁଛନ୍ତି ।

ଭକ୍ତିରୁବାଚ ।

ହେ ମୁନି ଧନ୍ୟ ମୋହଠାରେ । ପ୍ରୀତି ବଢ଼ାଇଲେ ନିରନ୍ତରେ
କେବେ ତୁମ୍ଭଙ୍କୁ ନ ଛାଡ଼ିବି । ଚିତ୍ତରେ ସର୍ବଦିନେ ଥିବି ।
ତୁମ୍ଭେ ଅନେକ କୃପାକଲ । ମୋ ବାଧା କ୍ଷଣକେ ନାଶିଲ ।
ଚେତନା ନାହିଁ ପୁତ୍ରଙ୍କର । ଏହାଙ୍କୁ ପ୍ରବୋଧନା କର ।

ସୂତଉବାଚ ।

ସୂତ କହନ୍ତି ଶୌନକଙ୍କୁ । ଶୁଣ କହିବା ବିଧାନକୁ ।୫୧।
ନାରଦ ଭକ୍ତି ବଚନକୁ । ଶୁଣି ବହିଣ କରୁଣାକୁ ।୫୨।
କରରେ କର କର୍ମନକୁ । କଲେ ସେ ପୁତ୍ରଙ୍କ ବୋଧକୁ ।
ଜ୍ଞାନ ବୈରାଗ୍ୟ ବୋଧ ପାଅ । କି ହେତୁ ତୁମ୍ଭେ ଶୋଇଥାଅ
କର୍ଣ୍ଣ ରନ୍ଧ୍ରରେ ମୁଖ ଭରି । ଏରୂପେ ଉଚ୍ଚ ନାଦ କରି ।
ବେଦ ବେଦାନ୍ତ ଶାସ୍ତ୍ର ସ୍ତବେ । ଆବର ଗୀତା ପଠନରେ ।
ନାରଦ ବଳରେ ଅତ୍ୟନ୍ତେ । ସେ ବେନି ପ୍ରବୋଧ କରନ୍ତେ
କଷ୍ଟ କଷ୍ଟରେ ସେହୁ ବେନି । ଉଠିଲେ ଅଳସକୁ ଘେନି
ନେତ୍ରରେ କିଛି ନ ଦେଖନ୍ତି । ଅଳସେ ହାଇକି ମାରନ୍ତି ।
ବକ ପରାଏ ଶୁକ୍ଳ ମାତ୍ର । ସୁଖିଲା କାଷ୍ଠ ସମ ଗାତ୍ର ।୫୬।
କ୍ଷୁଧାରେ କ୍ଷୀଣ ଦେହ ବହି । କହୁଛନ୍ତି ନେତ୍ରରେ ଅନାଇ
ଘୁମାଇ ପୁଣି ସେହି ସୋଇଲେ । ଋଷି ତା ଦେଖି ଚିନ୍ତାକଲେ
କି ବିଧାନ କରିବା ବୋଲି । ଋଷି ରହିଲେ ମନେ ଭାଳି ।
ଏ ବୃଦ୍ଧ କାଳରେ ଏ ବେନି । ଆଶ୍ଚର୍ଯ୍ୟ ଶୋଏ ନିଦ୍ରା ଘେନି

ଏ ହେତୁରୁ ଚେତନ୍ତ କେଶବ । ଚେତାଇ ଦେଲେ ସେ ସ୍ୱର୍ଗବ
ହେ ମୁନ ଖେଦକୁ ଦକବ । ସଫଳ ହୃଦମ ଭୂମ୍ଭର ।
ହେବ ଏରୂପେ ଆକାଶରେ । ବାଣୀ ସୁଭିଲା ସେ କାଳରେ
ଏଥି ନମନ୍ତେ ମୁନବର । ଉତ୍ତମ କର୍ମକୁ ଆଚର । ୭୩ ।
ଅତ୍ୟନ୍ତ ସାଧୁଜନମାନେ । ଭୂମ୍ଭର ଏ କର୍ମ ବଦ୍ୱନେ ୭୪
କହ୍ମ କରବେ ଉପକାର । ଜଗତେ ହାଧୁଜନେ ସାର ।
ଉତ୍ତମ କର୍ମ ଅଚରଣେ । ନଦ୍ରା ବୃଦ୍ଧତା ତତକ୍ଷଣେ ।୭୬।
ଏ ଦୁହଙ୍କର ନାଶଯିବ । ଭକ୍ତି ଅତ୍ୟନ୍ତେ ପ୍ରସରବ ।୭୭।
ଆକାଶ ବାଣିକ ଏରୂପେ । ସର୍ବେ ଶୁଣିଲେ ସୁସ୍ପଷ୍ଟରୂପେ ।
ଏ କଥା ଜଣାନାହ୍ମ ବୋଲ । ନାରଦେ ବସ୍ମୟରେ ଭଳ ।

ନାରଦଉବାଚ ।

ଏହ୍ମ ଆକାଶ ବାଣି ଯାହ୍ମା । କହ୍ମଲେ ଗୋପ୍ୟ କର ତାହ୍ମା
କରବା କ ସାଧନ ତାର । କହୁତ ନୋହଲା ଗୋଚର ।
ଯେବଣ ସତ କର୍ମ ବଳେ । ଏ ବେନ କାର୍ଯ୍ୟ ହେବ ଭଲେ
ସେ ସନ୍ତଜନ କେଉଁଠାରେ । ସାଧନ ଦେବେ କରୂପରେ
ଆକାଶ ବାଣି କହେ ଯାହ୍ମା । କରୂପେ କରବ ମୁ ତାହ୍ମା ।

ସୂତଉବାଚ ।

ସୂତ କହନ୍ତ ଶୌନକଙ୍କୁ । ଶୁଣ ମୋ କହ୍ମବା ବାକ୍ୟକୁ ।
ଏରୂପେ ସେ ମୁନ ବସ୍ମୟରେ । ସେଠାରେ ତାଙ୍କୁ ରଖି ଭକ୍ତ
ସେଠାରୁ ପ୍ରୟାଗକୁ ଗଲେ । ସକଳ ତୀର୍ଥରେ ଭ୍ରମିଲେ ।
ମାର୍ଗରେ ତୀର୍ଥମାନଙ୍କରେ । ପୃଚ୍ଛିଲେ ଦେଖି ମୁନବରେ ।
ସମସ୍ତେ ଶୁଣିଲେ ବୃତ୍ତାନ୍ତ । ନକହ୍ମ କରତ ନଶ୍ଚନ୍ତ ।୮୯।
ଏମନ୍ତେ ସେ ମୁନ ଶୁଣିଲେ । କହ୍ମବା ଯାହ୍ମା ଅଚରଲେ ।
ଅସାଧ୍ୟ ବୋଲି କେ କହ୍ମଲେ । ଅଜଣା ବୋଲି କେ ବୋଇଲେ
ମୂକ ହୋଇଣ କେହ୍ମ ରହେ । କେ ପୁଣି ଦୂରକୁ ପଳାଏ

ବସ୍ତ୍ରସ୍ଥ ବନ୍ଧୁ ହାହାକାର । ଧ୍ୱନ ବ୍ରହ୍ମାଣ୍ଡେ ପରସ୍ପର ।୧୦୬।
ବେଦ ବେଦାନ୍ତ ଗୀତା ଶାସ୍ତ୍ର । ପଢ଼ି ବୋଧନ୍ତେ ଅତମାତ୍ର
ଏ ଜ୍ଞାନ ବୈରାଗ୍ୟ ଭକତ । ଶୁଣି ନ ଜୁଟିଲେ ସୁତତ ।
ଆନ ଉପାୟ ଏଥେ ନାହିଁ । ଏରୂପେ କଣ୍ଠେ କୁହାକୁହି ।
ହୋଇଣ ମୁନିଜନଙ୍କର । ସେଠାରେ ହେଲା ବ୍ୟବହାର ।
ଦେବତା ଋଷିଗଣେ ତହୁଁ । କହିଲେ ମନେ ହେଉ ବହୁ
ନୁହଁ ନାରଦ ଯୋଗ ଜ୍ଞାନ । ସେ ଯାହା ନପାରିଲେ ଜାଣି
ଇତର ଜନ ସେ କଥାରେ । କରିବ ବୋଲି କେବା ପାରେ
ଏହି ରୂପରେ ମୁନିଜନ- । ମାନଙ୍କୁ ପୁଛନ୍ତେ ବଚନ ୧୦୭
ନଣ୍ତିସ୍ତ କର ନ କହିଲେ । ଅତ୍ୟନ୍ତ ଅବାଧ ହୋଇଲେ ।
ଏ ହେତୁ ତନ୍ତାରେ ଆତୁର । ହୋଇଣ ସେହୁ ମୁନିବର ।
ତପସ୍ୟା ଆଚରିବ ମୁହିଁ । ଏମନ୍ତ ନଶ୍ଚୟକୁ ବହି ।୧୦୮।
ବଦରୀ ବନରେ ପ୍ରବେଶ । ହୋଇଲେ ବ୍ରହ୍ମାଙ୍କର ଶିଷ୍ୟ ।
ଏହି ସମୟେ କୋଟି ସୂର୍ଯ୍ୟ । ସମାନ ଯାହାଙ୍କର ତେଜ ।
ଏ ସନକାଦ୍ଦି ମୁନିବର- । ମାନଙ୍କୁ ଦେଖି ଅତ୍ରତର ୧୦୯
ବିନୟ ବଚନେ ନାରଦ । କହିଲେ ହୋଇଣ ଆନନ୍ଦ ।

ନାରଦଉବାଚ ।

ହେ ମୁନିବରେ ଶ୍ରେଷ୍ଠବରେ । ମିଳିଲୁ ଆଜ ତୁମ୍ଭ ପାଶେ ।
କଥା ଏ ପଚ୍ଛୁରୁଛି ମୁହିଁ । ସତ୍ୱରେ କହ ଦୟାବହି ୧୧୦
ହେ ମୁନିବରେ ବୁଝି ଶାସ୍ତ୍ର । ଯୋଗ ଜ୍ଞାନରେ ଯେ ପବିତ୍ର
ଯେ ପଞ୍ଚ ବରଷ ବୟସେ । ସର୍ବଦା ଥାଇ ପରବାସେ ।
ସକଳ ପୂର୍ବ ପିତାମହ । ସଦା ବୈକୁଣ୍ଠ ଯାଙ୍କ ଗୃହ ।
ଶ୍ରୀହରି କୀର୍ତ୍ତନରେ ସ୍ୱଚ୍ଛ । ଲୀଳା ଅମୃତରେ ସେ ମତ୍ତ ।
କେବଳ ଭଗବାନ କଥା । ମାତ୍ରକୁ ନଜାଣେ ଅନ୍ୟଥା ।

ଶ୍ରୀହରି ଶରଣ ଏ ଶୀର । ନଚ୍ୟରେ ମୁଖେ ପରଶୁଭ ।
ଏ ଯେବନ କାଳବଶୁଁ ଆସି । ଜଗ ତୁମ୍ଭଙ୍କୁ ନ ଗ୍ରସି ।
ଯାହାଙ୍କ ଭ୍ରୂଭଙ୍ଗ ମାତ୍ରରେ । ବୈକୁଣ୍ଠ ଦ୍ୱାରର ପୂର୍ବରେ ।
ଶ୍ରୀହରି ଦେବନ ଦ୍ୱାରପାଳେ । ପଡ଼ିଲେ ଆସି ଭୂମି ତଳେ ।
ପୁଣି ଯାହାଙ୍କ କୃପାବଶେ । ସେ ଦେବନ ବୈକୁଣ୍ଠେ ପ୍ରକାଶେ
ଏମନ୍ତ ତୁମ୍ଭମାନଙ୍କର । ଦର୍ଶନ ଭାଗ୍ୟରୁ ଆମ୍ଭର । ୧୨୧ ।
ନିଜଲି ଯେଣୁ ଧାନ ମୁହିଁ । ପ୍ରସନ୍ନ ହୁଅ ଦୟା ବହି ।
କହିଲ ଦେବ ବାଣୀ ଯାହା । ତା ଭକ୍ତି ସାଧନେ ଯେ ତାହା
କହ ଦୟାରେ କରୁଣରେ । ତାର ଅନୁଷ୍ଠାନ ସଂସାରେ ।
କରନ୍ତି ଏ କଥା ବିସ୍ତାର । ସଂକ୍ଷେପେ କହ ମୁନିବର ।
ଜ୍ଞାନ ବୈରାଗ୍ୟ ଭକ୍ତିଙ୍କର । କି ରୂପେ ସୁଖ ହୋଇବାର ।
ପୁଣିହିଁ ସବୁ ବର୍ଣ୍ଣଙ୍କରେ । ଏ ତିନ ରହିବେ ପ୍ରେମରେ ।
ଏ କଥା ଅଛି ଯେହୁ କହ । ସଂଶୟ ନାଶି ଦୟା ବହି ।

ସନତ୍କୁମାରଉବାଚ ।

ସେ ସନତ୍କୁମାର ଭଣିଲେ । ଶୁଣି ନାରଦ ଏହା ଭଲେ ।
ଯୋଗ ହୃଦୟ ପ୍ରଭାକର । ଏ କୃଷ୍ଣ ଭକ୍ତ ଜନେ ବର ।
ହେ ଦେବ ଋଷି ଚନ୍ଦ୍ରା ତେଜ । ହରଷ କେତେ ବହି ଆଜ
ପୂର୍ବରୁ ସୁସାଧ ଉଦାସ୍ୟ । ବର୍ଣ୍ଣିଛୁ ଏଥି ଏ ନିଶ୍ଚୟ । ୧୩୨ ।
ଭକ୍ତ ଶିରୋମଣି ତୁମ୍ଭେ । ଜାଣୁଛୁ ହେ ନାରଦ ଆମ୍ଭେ ।
ହେ ମୁନି ଭକ୍ତିର ନିମନ୍ତେ । ବର୍ଣ୍ଣିଲେ ଅଛି କୃଷ୍ଣ ଚିତ୍ତେ ।
ଏ ତୁମ୍ଭଠାରେ ଆଶ୍ଚର୍ଯ୍ୟକୁ । ଆଣିମା ନାହିଁ ହୃଦୟକୁ ।
ଯେ କୃଷ୍ଣ ଭକ୍ତ ସେହୁ ଭକ୍ତି । ଥାପଇ ସର୍ବଦା ଏ କ୍ଷିତି ।
ବହୁତ ପନ୍ଥା ଋଷି ଜନେ । ପ୍ରକଟ କଲେ ଏ ଭୁବନେ ।
ସେ ପନ୍ଥା ଦୁଃଖରେ ସାଧିଲେ । କଷ୍ଟେ ସ୍ୱର୍ଗ ଫଳ ମିଳେ

ଯେ ପନ୍ଥା ବୈକୁଣ୍ଠ ସାଧନ । ଯେ ଗୁପ୍ତ ହୋଇଅଛୁ ଜାଣ
ସେ ପନ୍ଥା ଉପଦେଶ କାରି । ପୁରୁଷ ମିଳେ ଆଗ୍ୟକର ।
ଆକାଶ ବାଣୀ ଯା କହନ୍ତି । ସେ ସତକର୍ମ ଏଥି ଭଲ ୧୪୧
ପ୍ରସନ୍ନ ବୁଦ୍ଧି ସ୍ଥିର ମନ । ହୋଇଣ ଶୁଣ ଏ ବଚନ ୧୪୨
ତପସ୍ୟା ଯଜ୍ଞ ଦ୍ରବ୍ୟ ଯଜ୍ଞ । ଅଛଇ ଆନ ଯୋଗ ଯଜ୍ଞ ।
ଉତ୍ତମ ଜ୍ଞାନ ଯଜ୍ଞ ପୁଣି । କର୍ମ ସୂଚକ ବୋଲି ଭଣି ।
ନିଷ୍ଠସ୍ୟେ ସତ୍କର୍ମ ସୂଚକ । ଏ ଜ୍ଞାନ ଯଜ୍ଞ ଏ ବିବେକ ।
ପଣ୍ଡିତ ଜନରେ କଥିତ । କହୁବା ଏ କର୍ମ ବୃତ୍ତାନ୍ତ ୧୪୩
ଏ ସତକର୍ମ ଭାଗବତ । ଶୁକାଦ ମୁନି ଗଣେ ଖ୍ୟାତ ।୧୪୪
ଧ୍ୟାନ ଶ୍ରବଣରୁ ଯାହାର । ବୈରାଗ୍ୟ ଜ୍ଞାନ ଭକ୍ତିବର ।
ଶରୀରେ ବଳ ପ୍ରବର୍ତ୍ତିବ । ଜ୍ଞାନ ବୈରାଗ୍ୟ ଭକ୍ତି ଯିବ ୧୪୫
ଭକ୍ତି ତ ମହା ସୁଖପାଇ । ଉଦ୍ଧବ ଏଥି ଥୀର ହୋଇ ।
ଶ୍ରୀଭାଗବତଙ୍କ ଶବଦରେ । ଯେ କଳି ଦୋଷେ ଏସ୍ଥାନରେ ।
ନାଶ ହୋଇବେ ଅତଃସ୍ୟେ । ଯିହ ଶବଦରେ ବୃକ ତ୍ରାସ୍ୟେ
ଜ୍ଞାନ ବୈରାଗ୍ୟରେ ସହିତ । ଅତ୍ୟନ୍ତ ପ୍ରେମ ରସେ ଯୁକ୍ତ ।
ଏମନ୍ତ ଭକ୍ତି ପ୍ରତିପଦେ । ପ୍ରବଳ ହେବ ଏ ଲୋକରେ ।
କ୍ରୀଡ଼ା କରିବେ ଅତଃସ୍ୟେ । ସେହି ମୁନି ଜନର ଯଶସ୍ୟେ ।

ନାରଦଉବାଚ ।

ଏମନ୍ତ ଶୁଣି ସେ ନାରଦ । କହନ୍ତି ମନେ ବଢ଼ି ମୋଦ ।
ଯେ ବେଦ ବେଦାନ୍ତ ବାଦରେ । ଆବର ଗୀତା ପଠନରେ
ବୋଧିଲେ ହେଲେ ଭକ୍ତି ଜ୍ଞାନ । ବୈରାଗ୍ୟ ଏ ତିନ ବର୍ଦ୍ଧନ
ଉଠିଲେ ନାହିଁ ଭାଗବତ । ଶୁଣିଲେ ଉଠିବେ କେମନ୍ତ ।
ବେଦ ବେଦାନ୍ତ ଗୀତା ବାଦ । ପ୍ରତି ଶ୍ଳୋକରେ ପଦ ପଦ
ବେଦ ଅର୍ଥରେ ସେ ପୂରିତ । ଏ ଫଳ ନ ଦେଲେ କଥିତ

ଯାହା ଦର୍ଶନ ଫଳ ପାଇଁ । ସ୍ମରଣା ଗୀତେ ପ୍ରୀତି ବହି ॥
ଏମନ୍ତ ଅଟ ଋଷିମାନେ । ଛନ୍ତି ଅଖ ଫଶନ୍ତୁ ବହନେ ॥

କୁମାରଉବାଚ ।

ଶୁଣି ସେ ଋଷିଙ୍କ କ୍ରମରେ । କହିଲେ ନାରଦଙ୍କୁ ଧୀରେ
ବେଦ ଉପନିଷଦ ସାର । ଅତି ଉତ୍ତମ ଫଳା ଧାର ॥
ସକଳ ଶାସ୍ତ୍ରରୁ ବାହାର । ଏ ଭାଗବତ କଥା ସାର ॥ ୧୬୭
ତିନ ଭୁବନରେ ଗୁପତ । ହୋଇଛି ମହିମା ବହୁତ ॥
ଯେସନେ ରସାଳ ବୃକ୍ଷର । ମୂଳରୁ ଅଗ୍ର ଯାଏ ତାର ॥
ନୁହଇ ରସ ଅସ୍ୱାଦନ । ସେ ରସ ଏକ ଠାବ ପୁଣ ୧୬୯
ହୋଇଣ ଫଳେ ପ୍ରବେଶଇ । ସେ ଫଳ ମଧକୁ ହରଇ ॥
ଯେରୂପେ ଦୁଗ୍ଧ ମଧେ ଥାଇ । ଘୃତ ଆସ୍ୱାଦ ଜଣାନୋହି ॥
ସେ ଦୁଗ୍ଧ ମଧରୁ ବାହାର । ହୋଇଲେ ସବୁ ଦେବଙ୍କର
ରସକୁ ବଢ଼ାଇ ବହୁତ । ସେ ଦ୍ରବ୍ୟ ପଦାର୍ଥରେ ଖ୍ୟାତ
ଇକ୍ଷୁରେ ଆଦ ମଧ ଅନ୍ତ । ବ୍ୟାପି ମାଧୁର୍ଯ୍ୟ ତହିଁ ସ୍ଥିତ ॥
ତହିଁ ଭିତରେ ସେ ମାଧୁର୍ଯ୍ୟ । ଶ୍ୱେତ ସର୍କରା ନାମେ ପୂଜ୍ୟ
ସେ ରୂପେ ଭାଗବତ ଶାସ୍ତ୍ର । ଜଗତେ ଅତିହି ବିଚିତ୍ର ୧୭୬
ଏରୂପେ ବ୍ରହ୍ମାରେ ପୂଜିତ । ଏହୁ ଶ୍ରୀ ମହାଭାଗବତ ॥
ଜ୍ଞାନ ବୈରାଗ୍ୟ ଭକ୍ତିଙ୍କର । ନିମନ୍ତେ ହୋଇଛି ପ୍ରଖର ॥
ବେଦ ବେଦାନ୍ତରେ ନିପୁଣ । ଗୀତା ଶାସ୍ତ୍ରଙ୍କର କାରଣ ॥
ଏମନ୍ତ ବେଦବ୍ୟାସ ମୁନି । ମନରେ ପରିତାପ ଘେନି ॥
ପାଇସେ ଅଜ୍ଞାନ ସାଗର । ନିଭନ୍ତେ ମୋହକୁ ସତ୍ୱର ॥
ସେ କାଳେ ଆତ୍ମ ବ୍ରହ୍ମାସ୍ତ୍ରୁ । ଘୂର ଶ୍ଳୋକରେ ଭାଗବତ
ପୂର୍ବରେ କହିଲେ ବ୍ୟାସଙ୍କୁ । କରଣ ତାହା ଶ୍ରବଣକୁ ॥
ମନରେ ଯେତେ ବାଧା ଥିଲା । ତାହାଙ୍କ ମନୁ ଦୂର ହେଲା

ତେଣୁ ଏହାଙ୍କୁ ପାଶୋରିଲ । ଯେଣୁ ଏରୂପେ ପ୍ରଶ୍ନକଲ ।
ଶ୍ରୀ ଭାଗବତଙ୍କ ଶ୍ରବଣ । ଏ ଶୋକ ଦୁଃଖ ବିନାଶନ ୧୮୭

ନାରଦଉବାଚ ।

ଏ ରୂପେ କୁମାରଙ୍କ ବାଣୀ । ଶୁଣି ନାରଦ ପୁଣି ଭଣି ।
ଯାହାଙ୍କ ଦରଶନ ନାଶ । କରଇ ଅଶୁଭ ବିଶେଷ ୧୮୮
ପୁଣି ସଂସାର ଦାବାନଳେ । ପୀଡିତ ଜନଙ୍କର ଭଲେ ।
ମଙ୍ଗଳ କର ଏ ଜଗତ । କଷ୍ଟରେ କରଇ ପବିତ୍ର ।୧୯୦।
ବିଶେଷେ ଶେଷ ମୁଖୁ ଶୁଣି । ଏ ଭାଗବତ ସାର ବାଣୀ ।
ଅତ୍ୟନ୍ତ ଆନନ୍ଦରେ ମତ । ହୋଇଛୁ ଯାହାଙ୍କ ଚରିତ ।
ପ୍ରେମର ପ୍ରକାଶ କାର୍ଯ୍ୟରେ । ଶରଣ ଗଲି ତୁମ୍ଭଠାରେ ।
ଅନେକ ଜନ୍ମରେ ଅର୍ଜିତ । ଭାଗ୍ୟର ଉଦୟେ ଯେ ଜାତ ।
ତେମନ୍ତ ସାଧୁ ସଙ୍ଗ ପାଇ । ପୁରୁଷ ହରଷକୁ ବହି ।
ଅଜ୍ଞାନ ହେତୁ ମହା ଘୋର । ଏ ଭବ ମୋହ ଅନ୍ଧକାର
ନାଶିବ ବିବେକ ଉଦୟ । ଯହିଁରୁ ହୁଏ ଅତିଶୟ ।୧୯୭।
ଏମନ୍ତ କହିଣ ନାରଦ । ଆନନ୍ଦେ କଣ୍ଠ ଗଦଗଦ ।୧୯। ।
ସେ ମୁନି ପାଦେ ଚିତ୍ତ ଦେଇ । ଦଣ୍ଡନାଭି ହେବ କହଇ

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ ଶ୍ରୀଭାଗବତ ମହାତ୍ମ୍ୟେ କୁମାର ନାରଦ ସମାଗମେ ନାମ ଦ୍ୱିତୀୟ ଅଧ୍ୟାୟଃ ।



# ତୃତୀୟ ଅଧ୍ୟାୟ ॥

ନାରଦଉବାଚ ।

ଶୁଣି ନାରଦ କୁମାରଙ୍କୁ । ପୁଛନ୍ତି ଏମନ୍ତ ବାକ୍ୟକୁ ।୧।
ହେ ମୁନିବରେ ଶୁକ ଶାସ୍ତ୍ର । କଥାରେ ଉଜ୍ଜ୍ୱଳ ପବିତ୍ର ।
ଏମନ୍ତ ମୁକ୍ତି ଜ୍ଞାନ ଯୋଗ । ଭଗତ ଜ୍ଞାନ ବଇରାଗ୍ୟ ।
ଏହାଙ୍କୁ ସ୍ଥାପିବା ନିମନ୍ତେ । କରିବି ଯତନ ଅତ୍ୟନ୍ତେ ।
କେଉଁଣ ସ୍ଥାନ ଏଥୁ ଯଜ୍ଞ । ସ୍ଥଳକୁ ହୋଇବ ସେ ଯୋଗ୍ୟ
ଏ କଥା କହ ମୋତେ ବାରେ । ହେ ଦେବ ଜ୍ଞାନରୂପେ ବାରେ
ମହିମା ଶୁକ ଶାସ୍ତ୍ରଙ୍କର । ତିଦନ୍ତେ କହିବ ସତ୍ୱର ।୨।
କେତେ ଦିବସେ ଭଗବତ । ଶୁଣିମ୍ଭ ହୋଇ ଭକ୍ତିବନ୍ତ ।
କେଉଁଣ ବିଧାନ ଏଥିରେ । ହୋଇବ କହ ମୋତେ ସ୍ଥିରେ

କୁମାରଉବାଚ ।

ଶୁଣି ସେ ବ୍ରହ୍ମରୁଷି ଗଣ । କହନ୍ତି ନାରଦଙ୍କୁ ପୁଣ ।୧୦।
ବିବେକ ବିଜନ୍ମ ସହିତ । ହେ ବ୍ରହ୍ମସୁତ ଏ ଚରିତ ।୧୧।
କହିବା ଶୁଣ ଶୁଦ୍ଧ ମନେ । ଗଙ୍ଗା ଦୁଆର ସନ୍ନିଧାନେ ।
ଆନନ୍ଦ ମନେ ତଟ ଅଛୁ । ଅନେକ ରୁଷିରେ ପୂରିଛୁ ।
ଅମର ଶୁଦ୍ଧ ଟେଣେ ମୁକ୍ତ । ଅନେକ ଚର୍ଚ୍ଚରେ ଶୋଭିତ ।
ଯେ ନବ ଲତାରେ ସୁନ୍ଦର । ମୃଦୁ ବାଲୁକା ମନୋହର ।
ଅତି ରୁଚିର ଯେ ଏକାନ୍ତ । ବେଶ ହୋଇଣ ଯେହ୍ନ ଖ୍ୟାତ
ସୁବର୍ଣ୍ଣ ପଦ୍ମ ସୁବାସିତ । ଯାହାର ସମୀପରେ ସ୍ଥିତ ।
ଜୀବମାନଙ୍କର ବଇର । କେବେହେଁ ନଥାଇ ମନର ।
ଏ ଗଙ୍ଗାତଟେ ଜ୍ଞାନ ଯାଗ । ଯତ୍ନେ କରିବ ମହାଭାଗ ।
ଅପୂର୍ବ ସରସ ଏ କଥା । ତହିଁରେ ହୋଇବ ସର୍ବଥା ।
ଜୁରିଲୁ ଗାଣ୍ଡି କଳେବର । ଆଦ୍ୟରୁ ହେଉ ସେ ଦୁର୍ବଳ

ଏ ଭଇରାଗ୍ୟ ଜ୍ଞାନ ଦେବନ୍ । ଆସିବ ଧର୍ମ ଭକ୍ତି ପୁଣି ॥
ଯେବଣ ଠାରେ ଭାଗବତ । ତରୁଣ ହୁଅନ୍ତି ବୃଦ୍ଧ ।୨୩।
ହୋଇ ବୈରାଗ୍ୟ ଜ୍ଞାନ ଭକ୍ତି । ଆନନ୍ଦେ ଧର୍ମଙ୍କ ଆସନ୍ତି
ସେ କଥା ଶ୍ରବଣ କରନ୍ତି । ସେ ତିନ ହୁଅନ୍ତି ତରୁଣ ।

ସୂତଉବାଚ ।

ସୂତ କହନ୍ତି ଶୌନକଙ୍କୁ । ଶୁଣ ଚରିତ ଅମୃତକୁ ।୨୬।
ଏମନ୍ତ କହି ନାରଦଙ୍କୁ । କୁମାରେ ସଙ୍ଗେ ଘେନି ତାଙ୍କୁ ।
ଏ କଥା ଅମୃତ ପାନକୁ । ସତ୍ୱରେ ହୋଇ ଝରଥାକୁ ।
ସେ ସ୍ଥାନୁ ଗଙ୍ଗାତଟେ ଅସି । ପ୍ରବେଶ ହେଲେ ସର୍ବ ଋଷି
ଯେବଣ କାଳେ ଗଙ୍ଗା ତୀରେ । ପ୍ରବେଶ ହେଲେ ଋଷିବରେ
ଭୂଦେବ ବ୍ରହ୍ମ ତପଲୋକ । କୌତୁକେ ହୋଇଲେ ଉତ୍ସୁକ
ଏ ଭାଗବତ ଅମୃତକୁ । ପିଇବା ଏମନ୍ତ ଇଚ୍ଛାକୁ ।୩୨।
କରି ଧାଇଁଣ ପ୍ରଥମରେ । ଆସିଲେ ବଇଷ୍ଣବ ଜନରେ ।
ଭୃଗୁ ବଶିଷ୍ଠ ଯେ ଚ୍ୟବନ । ଗୌତମ ମେଧା ତିଥି ପୁଣ ।
ଦେବଳ ଦେବରାତ ରାମ । ସେ ବିଶ୍ୱାମିତ୍ର ଅନୁପମ ।
ସୂତକ ମାର୍କଣ୍ଡେୟ ପୁଣି । ଅତ୍ରି ପିପ୍ପଳ ଆଦ ମୁନି ।
ଆସିଣ ସେଠାରେ ପ୍ରବେଶ । ହୋଇଲେ ବହୁଣ ହରଷ ।
ସେ ବେଦବ୍ୟାସ ପରାଶର । ଶୁକ ଯାବାଲି ଜେ ଆବର ।
ଯହ୍ନୁ ଜେ ଆଦ ଯୋଗେଶ୍ୱର । ସ୍ତ୍ରୀ ପୁତ୍ର ମିତ୍ର ସହିତର ।
ଏମାନେ ସ୍ନେହ ସବ ବନ୍ଧ । ବେଶରେ ମିଳିଲେ କ ଧର୍ମ
ବେଦ ବେଦାନ୍ତ ମନ୍ତ୍ର ତନ୍ତ୍ର । ଏ ଅଷ୍ଟ ଶାସ୍ତ୍ରଙ୍କ ସହିତେ ।
ଆଉର ସତର ପୁରାଣେ । ସୁ ମୂର୍ତ୍ତି ଧରିଣ ଏମାନେ ।୪୨।
ଆନନ୍ଦେ ହୋଇଣ ପ୍ରକଟ । ଏ ସବେ ଧର୍ମ ହେଲେ ମେଳ
ଗଙ୍ଗାକୁ ଆଦ୍ୟ ସବୁ ନଦୀ । ସେ ତୀର୍ଥେ ପୁଷ୍କରକୁ ବଧି ।

ସକଳ କ୍ଷେତ୍ରେ ଦଶଦଶ । ଦଣ୍ଡକ ଆଦ୍ୟ ବନଦେଶ ।୪୬।
ଏମାନେ ଧରଣ ଦେହକୁ । ଅଇଲେ ସେ ଗଙ୍ଗା ତଟକୁ ।
ସକଳ ଯୋଗେନ୍ଦ୍ରକ ବରେ । ଦେବତା ଗନ୍ଧର୍ବ କନ୍ନରେ ।
ଏ ବଡ଼ କଥା ବୋଲି ତର୍ହି । ପ୍ରେମବଶ ହୋଇଲେକ ଧାଇ
ତର୍ହି ଭ ଅସିବା ମାନଙ୍କୁ । କହି ଆଣିଲେ ଗୁରୁ ତାଙ୍କୁ ।
ନାରଦ ଶ୍ରବଣ ଦକ୍ଷାକୁ । ଧଇଲେ ଦେଇଣ ମନକୁ ।
କୁମାରେ ପୂଜା ତର୍ହି ପାଇ । ବସିଲେ ଶ୍ରୀକୃଷ୍ଣଙ୍କୁ ଧ୍ୟାଇ ।
ବୈଷ୍ଣବେ ବିରକ୍ତ ସନ୍ନ୍ୟାସି । ଆବର ବ୍ରହ୍ମସ୍ଥିର ଋଷି ।
ଅନେକ ମୁଖ୍ୟ ଏନ୍ତୁମାନେ । ବସିଲେ ତହି କୁଶାସନେ ।
ନାରଦ ଏହାଙ୍କ ଅଗ୍ରତେ । ବସିଲେ ତର୍ହି ଶୁଭ ଚିତ୍ତେ ।
ଋଷିଏ ଦେବଗଣ ବୃନ୍ଦ । ସେହୁ ବେଦ ଉପନିଷଦ ୪୭
ସକଳ ତୀର୍ଥେ ସବୁ ନାଣି । ଏମାନେ ଭିନ୍ନ ଚିହ୍ନ ଧରି ।
ଯେଝା ପାଖରେ ଏ ବସିଲେ । କେହି କାହାକୁ ନ ମିସିଲେ
ଜୟ ଶବଦ ଶଙ୍ଖ ନାଦ । ଅବର ନମସ୍କାର ବାଦ ।୪୮।
ଏତେ ଶବଦେ ଗଙ୍ଗା ତଟ । ପୂରି ଉଛଳିଲା ପ୍ରକଟ ।
ମଙ୍ଗଳ ଚୂର୍ଣ୍ଣ ଲିପା ତର୍ହି । ଫିଙ୍ଗିଲେ ଆନନ୍ଦକୁ ପାଇ ।
ବିମାନମାନଙ୍କୁ ଆରୋହି । ଆକାଶ ମଣ୍ଡଳରେ ରହି ।୪୯।
କେତେହେଁ ଦେବ ନାରୀମାନେ । ଧରଣ ଆନନ୍ଦକୁ ମନେ
କଳପ ବୃକ୍ଷ କୁସୁମକୁ । ବର୍ଷିଲେ ସ୍ବର୍ଗେ ସେ ସ୍ଥାନକୁ ।

ସୂତଉବାଚ ।

ସୂତ କହନ୍ତି ଏ ବଚନ । ଶୁଣ ଶୌନକ ଦେଇ ମନ ।
ଏମନ୍ତେ ତର୍ହି ଏ ସମସ୍ତେ । ଏକ ମନ ହୋଇ ବହନ୍ତେ ।
ଏହୁ ନାରଦ ମହାତ୍ମାଙ୍କୁ । କୁମାରେ କହିଣ ଶ୍ରଦ୍ଧାକୁ ।
ମହିମା ଭାଗବତଙ୍କର । କହିଲେ ଶୁଣ ମୁନିବର ।୫୦।

## ଭୂମାକ୍ ଉଦ୍ଧାର ।

ଶୁକଦେବ ଶାସ୍ତ୍ର ମହିମା । ଏ ଅଗୋଚର ନାହିଁ ସୀମା ।
ଯାହାଙ୍କ ଶ୍ରବଣ ମାତ୍ରରେ । ମୁକତ ଆସି ରହେ କରେ ।
ଏ ଭାଗବତ ସାର କଥା । ସେବନ ସେବକ ସର୍ବଥା ।
ତାହାଙ୍କ ଶ୍ରବଣ ମାତ୍ରରେ । ଶ୍ରୀହରି ରହନ୍ତି ଚିତ୍ତରେ ।
ଅଠର ସହସ୍ର ଏ ଗ୍ରନ୍ଥ । ଦ୍ୱାଦଶ ସ୍କନ୍ଧରେ ସହିତ ।୭୨।
ଏଥିରେ ଶୁକ ପରୀକ୍ଷିତ । ସଂପାଦ ହୋଇଛନ୍ତି ବିଖ୍ୟାତ ।
ଏହାଙ୍କୁ ଭାଗବତ କହି । ଶୁଣ ଏହାକୁ ମନ ଦେଇ ।୭୪।
ଶୁକ ଶାସ୍ତ୍ରଙ୍କ କଥା ସାର । ହୋଇଲେ ଶ୍ରବଣ ଗୋଚର ।
ଏ ସଂସାର ଚକ୍ରରେ ଜନ । ଭ୍ରମଇ ଅଜ୍ଞାନ ବନ୍ଧନ ।
ବହୁତ ଶାସ୍ତ୍ର ଶୁଣିମାରେ । କି କାର୍ଯ୍ୟ ପୁରାଣ ପାଠରେ ।
ଯେ ଘୋର ସଂସାରର ଭ୍ରମ । ନାଶରେ ନୁହନ୍ତି ଏ କ୍ଷମ ।
ଏକ ଯେ ଭାଗବତ ଏହି । ମୁକତି ଦେବାରେ ଗର୍ଜଇ ।
ଯା ଘରେ ଅଛନ୍ତି ଏ ଶାସ୍ତ୍ର । ସେ ଘର ତୀର୍ଥରୁ ପବିତ୍ର ।
ସେ ଘରେ ରହିବା ଲୋକର । ସକଳ ପାପ ଯାଇ ଦୂର ।
ସହସ୍ର ଅଶ୍ୱମେଧ ଶତ । ବାଜପେୟ ଯାଗ ସୁକୃତ ।୮୨।
ଭାଗବତ କଥା ଷୋଡଶ । କଳାକୁ ନୁହଇ ସଦୃଶ ।୮୩।
ଶ୍ରୀ ଭାଗବତ କଥା ସାର । ଶ୍ରବଣ ମାତ୍ରେ ଜନଙ୍କର ।
ଦେହରୁ ସର୍ବ ପାପମାନେ । ଦୂର ହୁଅନ୍ତି ତତକ୍ଷଣେ ।
ପୁଷ୍କର ଗଙ୍ଗା ଗୟା କାଶୀ । ପ୍ରୟାଗ ଆଦି ତୀର୍ଥେ ଆସି ।
ଶ୍ରୀ ଭାଗବତ କଥା ସଙ୍ଗେ । ସମ ନୁହନ୍ତି କେତେ ବେଳେ
ଶ୍ରୀ ଭାଗବତ ଶାସ୍ତ୍ର ଜାଣ । ଶ୍ଳୋକାର୍ଦ୍ଧ ଶ୍ଳୋକ ପଦ ମାତ୍ର ।
ଏହାଙ୍କୁ ପଢି ନିରନ୍ତରେ । ଯିବେ ସ୍ୱଇଚ୍ଛା ବୈକୁଣ୍ଠରେ ।
ଓଁ କାର ବେଦ ମାତା ବେନି । ପୁରୁଷ ସୂକ୍ତ ଏହି ତିନି ।
ଦ୍ୱାଦଶାକ୍ଷର ମନ୍ତ୍ରରାଜ । ଏମାନେ ଭାଗବତେ ହେଜ ।

ବିରଷ ଅମ୍ଭ ଏହୁ କାଳ । ପ୍ରୟାଗ ବ୍ରାହ୍ମଣଙ୍କ କୁଳ ।୯୩।
ସୁରଭିଗଣ ଅଗ୍ନି ହୋତ୍ର । ଦ୍ୱାଦଶାକ୍ଷରଙ୍କ ଏ ଗାତ୍ର ।
ତୁଳସୀ କାନନ ବସନ୍ତ । ପୁରୁଷୋତ୍ତମ ପୁଣ୍ୟକ୍ଷେତ୍ର ।୯୪।
ଚତୁର୍ବେଦରେ ଏହାଙ୍କର । କେବେହେଁ କର ଖଣ୍ଡନରି
ଅର୍ଥ ସହିତ ଭାଗବତ । ପଠନ କରଇ ଯେ ନିତ୍ୟ ।୯୬।
କୋଟି ଜନ୍ମର ପାପ ଯେତେ । ତାହାଙ୍କ ନାଶଇ ତୁରନ୍ତେ
ଯେ ଭାଗବତେ ପ୍ରୀତି ବହୁ । ଶ୍ଳୋକାର୍ଦ୍ଧ ପାଦେ ବା ପଢ଼ଇ
ସେ ଅଶ୍ୱମେଧ ରାଜସୂୟ । ଫଳକୁ ଲଭଇ ନିଶ୍ଚୟ ।୯୯।
ଶ୍ରୀ ଭାଗବତଙ୍କ କଥନ । ମାନସେ ଶ୍ରୀହରି ଚିନ୍ତନ ।୧୦୦।
ତୁଳସି କାନନ ସେବନ । ସମସ୍ତ ଧେନୁଙ୍କୁ ପାଳନ ।
ଏ ତିନି ଫଳ ସମ ନାହିଁ । ଶୁଣ ପାର୍ବତି ମନ ଦେଇ ।
ଅନ୍ତ କାଳରେ ଯେଉଁ ଜନ । କରଇ ଏ ଶାସ୍ତ୍ର ଶ୍ରବଣ ।
ଶ୍ରୀହରି ତାକୁ ଦୟା କରି । ଦିଅନ୍ତି ବଇକୁଣ୍ଠ ପୁରି ।
ଯେ ଜନ ଏହୁ ଭାଗବତ । ସୁବର୍ଣ୍ଣ ସିଂହାସନେ ଯୁକ୍ତ ।
କରି ବୈଷ୍ଣବେ ଦାନ ଦେଇ । ସେ କୃଷ୍ଣ ସାଯୁଜ୍ୟ ଲଭଇ
ଜନ୍ମାଦ୍ୟ ମରଣ ପର୍ଯ୍ୟନ୍ତେ । ଯେ ଜନ ଶଠ ମୂର୍ଖ ଚିତ୍ତେ
ଶ୍ରୀ ଭାଗବତ କଥାମୃତ । ପାନକୁ ନକଲା କିଞ୍ଚିତ ।୧୦୮।
ଚଣ୍ଡାଳ ଘର ସମ ହୋଇ । ତା ଜନ୍ମ ବ୍ୟର୍ଥରେ ଯାଇ ।
କେବଳ ମାତା ଗର୍ଭ ଦୁଃଖ । ଦେଇ ଜନ୍ମିଲା ସେହୁ ମୂର୍ଖ ।
ଯେତେକ ପାପ ଆତ୍ମା ଜନ । ନ ଶୁଣେ ଶ୍ରୀଶୁକ ବଚନ ।
ତାକୁ ଜନ୍ମାନ୍ଧ ଶବ କହୁ । ପଶୁରେ ଗଣନା ସେ ହୋଇ
ଧିକ ସେ ଅଭାଗ୍ୟ ନର । ଇନ୍ଦ୍ରାଦି କହନ୍ତି ଏ ଗୀର ।
ଶ୍ରୀ ଭାଗବତ ଜ୍ଞାନ କଥା । ମର୍ତ୍ତ୍ୟରେ ଦୁର୍ଲଭ ସର୍ବଥା ।
ଏ ପୁଣି କୋଟି ଜନ୍ମାର୍ଜିତ । ସୁକୃତ ହୁଅଇ ପ୍ରାପତ ୧୧୨
ବେଦ ଯୋଗନିଧି ବ୍ରହ୍ମସୂତ୍ର । ତେଣୁ ମହତେ ଭାଗବତ ।

ଶୁକ୍ରୀବ ଶତ୍ରୁ ଶୁଦ୍ଧ କର । ଦଶ ନିୟମ ନ ଭଗ୍ନର ।୧୧୭।
ସର୍ବଦା ଏ ଶାସ୍ତ୍ର ଶ୍ରବଣ । ସମାନ ଫଳ ହୁଏ ଜାଣ ।
ଶ୍ରଦ୍ଧାଦ ବ୍ରହ୍ମଚର୍ଯ୍ୟ ସତ୍ୟ । ଆଚର ଭାଗବତ ନିତ୍ୟ ।
ଶ୍ରବଣ କର୍ମ ଏହା କହି । କଳିରେ ଶକ୍ୟ ଏ ନୁହଇ ।
ତେଣୁ ଶୁକଙ୍କ ଆଜ୍ଞାମାନ । ଶୁଣିମ ଅର୍ଥ ମନେ ଦେନ ।
ମାନସ ହେବାରୁ ଅଜସ୍ର । ଅଳ୍ପ ଆୟୁଷ ଯେଣୁ ଷସ୍ର ।
ଆତର ବହୁ ରୋଗ କ୍ଳେଶ । ଏରୂପେ କଳି ବହୁ ଦୋଷ ।
ହେବାରୁ ସପ୍ତାହ ଶ୍ରବଣ । ଜନଙ୍କୁ ହୋଇବ କାରଣ ।
ଯେ ଜନ ଏ ଶାସ୍ତ୍ର ଶ୍ରବଣ । ଦୀକ୍ଷାରେ ପ୍ରବର୍ତ୍ତାଇ ମନ ।
ନିୟମ ମନ ଜନ୍ମ ତାର । ଘଟିବ ବଗ୍ନର ମନର ।୧୨୭।
ଏ ଯେବେ ସପ୍ତାହ ଶ୍ରବଣ । ବିହିଲେ ପରମ କାରଣ ।
ଏ ଭାଗବତ ଆଦ ଅନ୍ତ । ଅବଧି କର ଯେହୁ ନିତ୍ୟ ।
ଶ୍ରଦ୍ଧାରେ ଶ୍ରବଣ କରଇ । ତହିଁ ଯେତେକ ଫଳ ପାଇ ।
ସେ ଫଳ ସପ୍ତାହେ ଲଭଇ । ଏମନ୍ତ ଶୁକ ଛନ୍ତି କହି ।
ତପସ୍ୟା ଯୋଗ ସମାଧିରେ । ଯେ ଫଳ ମିଳଇ ସଂସାରେ
ଅନାୟାସରେ ସେହୁ ଫଳ । ସପ୍ତାହ ଶ୍ରବଣରେ ମିଳ ।
ତପସ୍ୟା ଯଜ୍ଞ ତୀର୍ଥ ଧ୍ୟାନ । ଆବର ବ୍ରତ ଯୋଗ ଜ୍ଞାନ ।
ଏହାଙ୍କ ଫଳକୁ ନିନ୍ଦଇ । ସପ୍ତାହ ନିରତେ ଗର୍ଜ୍ଜଇ ।

ଶୌନକଉବାଚ ।

ଶୁଣି ଶୌନକ ମୁନି କହେ । ହେ ସୂତ ପୃଚ୍ଛିବ କଥାଏ ।
ଆଶ୍ଚର୍ଯ୍ୟ ଏହୁ କଥା ସାର । ଜ୍ଞାନାଦ ଧର୍ମଙ୍କ ବଗ୍ନର ୧୩୭
କର କହିଲ ବର୍ଣ୍ଣମାନେ । ଶୁଣି ସଂଶୟ ମୋର ମନେ ।
ଯୋଗ ବେଦାଦ ପ୍ରକାଶକ । ଆବର ମୋକ୍ଷର କାରକ ।
ଏହୁ ପୁରାଣ ଭାଗବତ । କେବଣ ଠାରୁ ହେଲେ ଜାତ ।

ମୁନିଉବାଚ ।

ଶୁଣି କହନ୍ତି ସୂତ ତୋଷେ । ହେ ମୁନି ଶୁଣିମା ବଚନେ ॥
ଭୂମିକ ସ୍ତୁତି ଅବଧାନ । ବୈକୁଣ୍ଠ ପୁରକୁ ଗମନ ।୧୪୧।
କହିବା ବୋଲି ଯେତେ କାଳେ । ଉଦ୍ଧବ ବିଧାନକୁ କଲେ
ଏକାନ୍ତ ସ୍ଥଳରେ ଏ ଚରିତ । ସମସ୍ତ ହୋଇଛି ବିଦିତ ୧୪୩
ତା ଜାଣି ଉଦ୍ଧବ ଭୂରତେ । ପୁଚ୍ଛିଲେ ଶ୍ରୀକୃଷ୍ଣ ଅଗ୍ରତେ ॥

ଉଦ୍ଧବଉବାଚ ।

ହେ ବାସୁଦେବ ଭକ୍ତ କାର୍ଯ୍ୟ । ସାଧନ କର ତୁମ୍ଭେ ଅଜ
ଚିତ୍ତ ଅପଣା ଭୁବନକୁ । ଏଣୁ ମୁଁ ପୁଚ୍ଛଇ ତୁମ୍ଭଙ୍କୁ ।୧୪୪।
ମୋ ମନେ ସନ୍ଦେହ ଚିନ୍ତା ଜାତ । ଶୁଣି ତା କୁହ ସତ୍ୟ ତତ୍ତ୍ୱ ॥
ପ୍ରବେଶ ହେଲା ଘୋର କଳି । ଏଥିରେ ହେବେ ଜନ କେଳି
ତାଙ୍କ ସଙ୍ଗରୁ ପାପ ମନେ । ପଶିବେ ଉଗ୍ରତାକୁ ମନେ ॥
ସେ କାଳେ ଏ ଭୂମିର ଭର । ଅତ୍ୟନ୍ତ ହେବାରୁ ଦୁସ୍ତର
ଏ ଭୂମି ଧରି ଗୋରୂପକୁ । ଆଶ୍ରୟ କରିବ କାହାକୁ ॥
ହେ ହରି ତୁମ୍ଭ ବିନୁ ତ୍ରାଣ । କରିବ ତାକୁ କେଉଁ ଜଣ ॥
ଏ ଯେଉଁ ସନ୍ଦେହ ଦୟାବନ୍ତ । ନ ଯାଅ ପ୍ରଭୁ ଜ୍ଞାନବନ୍ତ ॥
ତୁମ୍ଭ ଅବତାର ହେଲେ । ଭକ୍ତଙ୍କ କାର୍ଯ୍ୟ ବହୁ ଭଲେ
ସ୍ୱ ପୁଣ ରୂପେ ଅବତାର । ହେଲ ତୁମ୍ଭେ ଦାମୋଦର ॥
ତୁମ୍ଭ ବିରହେ ଭକ୍ତଜନେ । କେମନ୍ତେ ରହିବେ ଭୁବନେ
ନିର୍ଗୁଣ ଉପାସନା କଷ୍ଟ । ସଂସାରେ ପଡ଼ିଲେ ପ୍ରଜନ୍ତ ୧୪୭
ଏ କଥା ଜାଣି ଯୋଗୀ ସ୍ୱାବନ୍ତ । କିଛି ଉପାୟ ଦାଅ କହ ॥
ଏରୂପେ ଉଦ୍ଧବ ବଚନ । ଶୁଣି ଶ୍ରୀ ପ୍ରଭୁ ଭଗବାନ ।୧୪୮॥
ଭକ୍ତଙ୍କ ଆଶ୍ରୟ ନିମନ୍ତେ । ବିଧାନ କରିବା କେମନ୍ତେ ॥
ଏରୂପେ ପ୍ରଶ୍ନରେ ହରି । ଚିନ୍ତିଲେ ମାନସେ ବିଚାରି ॥

ଆପଣା ତେଜ ଭାଗବତେ । ନେଇଁ ଥୋଇଲେ ବ୍ରହ୍ମାଣ୍ଡରେ
ଆପଣେ ଅନ୍ତର୍ଭୂତ ହେଲେ । ଏ ଶାସ୍ତ୍ର ସାଗରେ ମିଳିଲେ
ତେଣୁ ବଚନ ମୟ ମୂର୍ତ୍ତି । ଜଗତେ ପ୍ରତ୍ୟକ୍ଷ ଶ୍ରୀପତି ॥
ଏଣୁ ଏ ସେବକ ଦର୍ଶନ୍ତି । ଆବର ଶ୍ରବଣ ପଠନ୍ତି ୧୬ ॥
ସକଳ ପାତକ ନାଶନ୍ତି । ସାକ୍ଷାତ ହରି ଏ ଅଟନ୍ତି ॥
ତେଣୁ ଏ ସପ୍ତାହ ଶ୍ରବଣ । ସକଳ ଠାରୁ ଶ୍ରେଷ୍ଠ ଜାଣ ॥
ଅନ୍ୟ ସାଧନଙ୍କୁ ବଳାଧି । କଳିରେ ଏ ଧର୍ମ ପ୍ରକାଶି ॥
ଦୁଃଖ ଦାରିଦ୍ର୍ୟ ମନ୍ଦଭାଗ୍ୟ । ପାତକ ନାଶ କୋପ ବେଗ
ଏମାନଙ୍କ ବିନାଶନ ପାଇଁ । କଳିରେ ଏ ଧର୍ମ ହୋଇଅଛି ॥
ଏ ଧର୍ମ ନଥିଲେ ସଂସାରେ । ଲଂଘି ନପାରନ୍ତି ପାପ ପୁରେ ॥
ଏମନ୍ତ ମାୟା ବିଷ୍ଣୁଙ୍କର । ଲଂଘନ୍ତେ କରୁଣରେ ନର ॥
ଏଣୁ ଏ ସପ୍ତାହ ବିଧାନ । ପ୍ରକାଶ କଲେ ଭଗବାନ ॥

ସୂତଉବାଚ ।

ସୂତ କହନ୍ତି ତୋଷ ଚିତ୍ତେ । ଶୌନକ ମୁନିଙ୍କ ଅଗ୍ରତେ ॥
ସନ୍ତରେ ବସି ଶୁଣିବାରେ । ସପ୍ତାହ ଶ୍ରବଣ ବିଧିରେ ୧୭ ॥
ଏ ଧର୍ମ ପ୍ରକାଶ କରନ୍ତେ । ଏକଇ ଆଶ୍ଚର୍ଯ୍ୟ ଘୁଷତେ ॥
ଜନ୍ମିଲା ହେନ୍ତୁ କାଳେ ପୁଣ । କହିବା ତହିଁର ବଖାଣ ॥
ତରୁଣ ବେଦପୁତ୍ର ସେନ । ଭକ୍ତିଙ୍କେ ପ୍ରେମ ରୂପେ ପୁଣି ॥
ବେଗରେ ଆସି ସେହ୍ନଠାରେ । ପ୍ରବେଶ ହେଲା ସୁଇଗ୍ରାରେ
ଶ୍ରୀକୃଷ୍ଣ ଗୋବିନ୍ଦ ହେ ହରି । ମୁରାରି ନାମ ନରହରି ॥
ଏମନ୍ତ ନାମ ମାନ ମୁଖେ । ଉଚ୍ଚାରି ପ୍ରବେଶିଲା ସୁଖେ ॥
ଶ୍ରୀ ଭାଗବତ ଅର୍ଥ ଯେ । ଶରୀରେ ହୋଇଛି ଭୂଷଣ ॥
ଧରିଛି ମନୋହର ବେଶ । ସନ୍ତୋଷ ହୁଅନ୍ତେ ପ୍ରବେଶ ॥
ଏମନ୍ତେ ସଭାଗତମାନେ । ଦେଖିଣ ବିଚାରନ୍ତି ମନେ ॥

କହେତୁ ମୁନିଙ୍କ ମଧ୍ୟରେ । ପ୍ରବେଶ ଅଛି ହେଲା ଧୀରେ
ସ୍ୱର୍ଣ କୁମାରେ କହନ୍ତି । ଏ ଶାସ୍ତ୍ର ପଠନ୍ତୁ ଭଗତ ॥
ଏବେ ଆସିଣ ପ୍ରବେଶିଲେ । ଭକ୍ତି ଏ ବଚନ ଶୁଣିଲେ
ସୁତ ସହିତେ ନମ୍ର ହୋଇ । ବଚନ କୁମାରଙ୍କୁ କହି ।

## ଭକ୍ତିରୁବାଚ ।

ଆଜ ସକଳେ ତୁମ୍ଭେ ମୋତେ । ପୁଷ୍ଟି କରିଛ ଦୟାଚିତ୍ତେ
ଏ ଭାଗବତ କଥା ରସେ । କଳିକି ନାଶିଲ ବିଶେଷେ ॥
କେବଣ ଠାରେ ଏବେ ମୁହିଁ । ରହିବି କହ ଦୟା ବହି
ଏମନ୍ତ ବ୍ରହ୍ମରୁଷିମାନେ । ଶୁଣି କହିଲେ ତୋଷ ମନେ ।
ସକଳ ଭକ୍ତିମାନଙ୍କରେ । ଗୋବିନ୍ଦ ରୂପ ଯେଣୁ ଧରେ ।
ଆଚର ପ୍ରେମଭକ୍ତି-ପ୍ରକାଶ । ଯେ ଭବ ରୋଗ କରେ ନାଶ
ଏରୂପେ ତୁମ୍ଭେ ଭକ୍ତଙ୍କର । ଧୈର୍ଯ୍ୟ ସହିତ ନିରନ୍ତର ।
ଏମନ୍ତ ମାନସ ସ୍ଥାନରେ । ରହ ଯାଇଣ ନିଶ୍ଚଳରେ ॥
ତେଣୁ ଏ କଳିଯୁଗ ଦୋଷେ । ଗରସ୍ତ ହେଲେହେଁ ବିଶେଷେ
ତୁମ୍ଭଙ୍କୁ ଜପାଇବ ଦେଖି । ନିଷ୍ଫଳେ ରହ ହୋଇ ସୁଖୀ ।
ଏମନ୍ତେ ତାଙ୍କ ଆଜ୍ଞା ପାଇ । ସେ ଭକ୍ତି ତୋଷମନେ ଯାଇ
ରହିଲେ ଭକ୍ତଙ୍କ ମାନସେ । ନପଡ଼ି ସେହୁ କଳି ତ୍ରାସେ ।
ଯେବଣ ଜନଙ୍କର ମନେ । ଭକ୍ତି ରହଇ ନିଶି ଦିନେ ॥
ସେ ଜନମାନେ ଏ ଜଗତେ । ଦୁର୍ବଳ ହେଲେ ହେଁ ଅତ୍ୟନ୍ତେ
ସେ ଲୋକମାନେ ଅତି ଧନ୍ୟ । ଦେବେ କରନ୍ତି ତାଙ୍କୁ ମାନ୍ୟ
ଶ୍ରୀହରି ନିଜ ଲୋକ ତେଜି । ଭକ୍ତି ଭାବରେ ଚିତ୍ତ ମଜ୍ଜି ।
ରହନ୍ତି ତାଙ୍କ ହୃଦେ ଆସି । ଶୁଣ ଶୌନକ ମହାରୁଷି ।
ବ୍ରହ୍ମାଣ୍ଡେ ବଇଷ୍ଣବେ ସାର । ଯେହ୍ନୁ ନାରଦ ମୁନିବର ।
ତାହାଙ୍କ ଅଧିକ ମହିମା । କେ କହି ପାରିବ ତା ସୀମା ।
ଯାହାଙ୍କ ଅଶ୍ରୁ ବଦନରେ । କଥିତ ଭାଗବତଙ୍କରେ ୨୦୮

ପାଠକ ଶ୍ରୋତା ଏହୁ ଦୁଇ । ସାରୁପ୍ୟ ମୁକ୍ତିକି ଲଭଇ ।
ଅନ୍ୟ ଧର୍ମରେ ନାହିଁ କାର୍ଯ୍ୟ । ହେ ମୁନିବର ଏହା ହେଜ
ଏ ଧର୍ମ ଜଗତେ ଦୁର୍ଲଭ । ଭଣିଲେ ପଦ୍ମନାଭ ଦେବ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ ଶ୍ରୀଭାଗବତ ମହାତ୍ମ୍ୟ ନିରୁପଣେ ଭକ୍ତି କଷ୍ଟ ନିବର୍ତ୍ତନ ନାମ ତୃତୀୟ ଅଧ୍ୟାୟଃ ॥



## ଚତୁର୍ଥ ଅଧ୍ୟାୟ ॥

ସୂତଉବାଚ ।

ଏହାନ୍ତେ ଶୁକ ମୁନିବର । ଶୁଣ ଶୌନକ ହୋଇ ସ୍ଥିର ।
ଭକ୍ତ ବତ୍ସଳ ବନମାଳୀ । ନବୀନ ଘନ ଦ୍ୟୁତି ଶାଳୀ । ୨ ।
ପୀତ ବସ୍ତ୍ରେ ମନୋହର । ସ୍ୱର୍ଣ୍ଣ କଟୀରେ ସୁନ୍ଦର । ୩ ।
ମୁକୁଟ କୁଣ୍ଡଳ ମଣ୍ଡିତ । ତ୍ରିଭଙ୍ଗ ଭଙ୍ଗି ସୁଲଳିତ । ୪ ।
କୌସ୍ତୁଭ ମଣ୍ଡନରେ ଶୋଭା । କୋଟି କନ୍ଦର୍ପ ମନ ଲୋଭା
ହରିଚନ୍ଦନେ ଘନଲିପ୍ତ । ପରମ ଆନନ୍ଦ ଚରିତ । ୬ ।
ମଧୁର ମୁରଲୀ ଶୋଭନ । ଏମନ୍ତ ରୂପ ଭଗବାନ । ୭ ।
ବୈଷ୍ଣବ ଜନ ଚିତ୍ତନରେ । ଦେଖି ଭକ୍ତିକି ଅତ୍ୟନ୍ତରେ ।
ଆପଣା ନଗରକୁ ତେଜ । ରହିଲେ ଭକ୍ତ ମନ ମଜ୍ଜି ।
ବୈକୁଣ୍ଠ ବାସୀ ଉଦ୍ଧବାଦ । ବୈଷ୍ଣବମାନେ ହୋଇ ମୋଦ
ଏ ଶାସ୍ତ୍ର କଥା ଶ୍ରବଣରେ । ରହିଲେ ମଦରେ ଗୁପ୍ତରେ ।
ସେ କାଳେ ଜୟ ଜୟ ଧ୍ୱନି । ଅତ୍ୟନ୍ତ ରସ ପୁଷ୍ଟି ପୁଣି ।
ଚୂର୍ଣ୍ଣ କୁସୁମ ବୃଷ୍ଟି ହେଲା । ଶଙ୍ଖ ଶବଦ ଉଛୁଳିଲା ॥

ନଗରର ଯେତେକ ଲୋକ ଥିଲେ । ଶୁଦ୍ଧ ଦେହ୍ୟାଦି ପାଚୋରିଲେ
ଦେଖି ତାହାଙ୍କୁ ଅଙ୍ଗୁଷ୍ଠକୁ । ନାରଦ କହିଲେ ବାକ୍ୟକୁ ॥

ନାରଦଉବାଚ ।

ହେ ମୁନିମାନେ ସମ୍ଭାଷର । ମହିମା ଅତି ଚମତ୍କାର ॥
ଏହାଙ୍କୁ ଦେଖି ମୁନିଜନେ । ଆବର ସେତା ଶତ ଗଣେ ॥
ସକଳ ପଶୁ ପକ୍ଷୀମାନେ । ନିଷ୍ପାପ ହୋଇଲେ ବହନେ ॥
ଏ ତିଅନ ଏକ୍ଷୁ ମହତ୍ତ୍ୱରେ । ଏ ଚଥ ଶୁଦ୍ଧ କରିବାରେ ॥
କଳିରେ ପବିତ୍ର ଯେ କଥା । ଏ ବିନୁ ନାହିଁଟି ସର୍ବଥା ॥
ଏ କଥା ପାତକ ନାଶଇ । ଏହା ସମାନେ ଆନ ନାହିଁ ॥
କଥା ଶୁଣୁଣ ଏ ସପ୍ତାହ । ଯଜ୍ଞେ କେ ନୋହେ ଶୁଦ୍ଧ ଦେହ
ଅତି ଦୟାଳୁ ଜନମାନେ । ନଗର ଲୋକ ହିତ ମନେ ॥
ନସାନ କର ଏ ଆଶ୍ଚର୍ଯ୍ୟ । ମାର୍ଗକୁ ଦେଖାଇଲେ ଆଜ ॥

କୁମାରଉବାଚ ।

କୁମାରେ ଶୁଣ ନାରଦଙ୍କୁ । କହନ୍ତି ବନ୍ଧ ମୁକ୍ତ ହ୍ୟାକୁ ।୬୫।
ସର୍ବଦା ପାପୀ ଦୁରାଗ୍ରହ । କୁତ୍ସିତ ମାର୍ଗରେ ପ୍ରସ୍ଥର ॥
କ୍ରୋଧ ଅନଳେ ଦଗ୍ଧାପିତ । କୁଟିଳ ଚିତ୍ତ କାମେ ରତ ॥
ଏମନ୍ତ ଜନେ ଏ କଳିରେ । ସପ୍ତାହ ବିଧି ଶ୍ରବଣରେ ।୬୮
ପବିତ୍ର ହୁଅନ୍ତି ନିଶ୍ଚୟେ । ମାନବେ ନକର ସଂଶୟେ ॥
ପିତା ମାତାର ଦ୍ରୋହକାରୀ । ସତ୍ୟ ବନ୍ଧୁନେ ତୃଷ୍ଣା ଧାରୀ ॥
ଆଶ୍ରମ ଧର୍ମରେ ରହିତ । ଦମ୍ଭ ମତ୍ସର ହିଂସା ଯୁକ୍ତ ।୭୧।
ଏମନ୍ତ ଜନେ ଏ ସପ୍ତାହ । ବିଧିରେ ହୋଇନ୍ତି ଶୁଦ୍ଧ ଦେହ
କାୟ ବଚନ ମାନସରେ । ଯେ ପାପୀ ଶଠ କଳାଙ୍କରେ
ପାତକ କାର୍ଯ୍ୟରେ ଅର୍ଜନ୍ତି । ପବିତ୍ର ଦେହକୁ ପାଅନ୍ତି ॥

ମଳିନ ଦୁଷ୍କୃତ ଜନେ । ଜଳରେ ହସ୍ତ୍ରାନ୍ତ ସ୍ନାନେ ॥
ନିର୍ମଳ କହଣ ଦେହକୁ । ଅନ୍ତରେ ଲଭଇ ମୋକ୍ଷକୁ ॥
ଏଥି ବିଦ୍ୟୁରେ ଭୂମ୍ନଙ୍କୁ । କହିବା ପ୍ରିୟ ଚରିତକୁ ।
ଯେହ୍ନ ତତ୍ତ୍ୱ ଶ୍ରବଣରେ । ପାତକ ନାଶ ଯିବ ଦୂରେ ॥
ପୂର୍ବେ ଯେ ଭୁଞ୍ଜାଇଦ୍ୱା କୂଳେ । ପାଠେ ଥିଲ ସୁକର୍ମିଳେ ॥
ତଥ୍ୟରେ ସୁର ତର୍ଣ୍ଣି ନରେ । ସ୍ୱଧର୍ମ ସତ୍ୟ ସତ୍କର୍ମରେ ।
ଅତ୍ୟନ୍ତେ ଆଶକ୍ତିକୁ ବନ୍ଧ । ନିତ୍ୟନ୍ତେ ଥାନ୍ତ ସୁଖେ ରହ ।
ଏମନ୍ତ ଯେହ୍ନ ପଠନରେ । ପଣ୍ଡିତ ବେଦାନ୍ତ ଶାସ୍ତ୍ରେ ।
ଯେ ସ୍ମୃତି ସୂନ କର୍ମବନ୍ତ । ତେଜେ କ ଦ୍ୟୁତ ଶୁଦ୍ଧାକାନ୍ତ
ବିଶେଷ ଦ୍ରବ୍ୟରେ ସଂଯୁତ । ଭିକ୍ଷୁକ ଦ୍ୱିଜ ତର୍ପ୍ପିତ ॥
ମୁରଳୀ ନାମେ ତାର ବାଳୀ । ଆପଣା ବୋଲେ ଗୃହ ସ୍ୱଳ
ହୃଦ୍ୟମ କୁଳରେ ଯେ ଜାତ । ସୁନ୍ଦର ଗୁଣେ ଅଦ୍ଭୁତ ।
ନିରତେ ଲୋକ ତର୍ପ୍ପି ଶୁଣ । ପୁଣି ନିଷ୍ଠୁରକୁ ରମଣେ ।
ହନ୍ତେ କଥା କହୁଥାଇ । ସୁମୃଣ୍ମ କଥାରେ ମଜ୍ଜଇ ।
କାହାକୁ ନଦଏ ସେ କଷ୍ଟ । ନିରତେ କଳହକୁ ଇଷ୍ଟ ।
ଏଭୂତେ ପ୍ରେମ ଭାବ ଯେନ । ତନ ଲଙ୍ଘନ୍ତି ହେତୁ ବେନ ।
ହସ୍ତାନ ନୋହିବାରୁ ଜାତ । ଦୁଃଖୀ ସେ ଲଭନ୍ତି ବହୁତ ॥
ନରୂରେ ଗୃହ ଅର୍ଥ କାମ । ଖଳ ହୁଅନ୍ତି ତରୁ ଭ୍ରମ ।
ସନ୍ତତ ଅର୍ଥେ ଗାନ ଜନ । ଗୋ ଭୂମି ହିରଣ୍ୟ ବସନ ।
ଦଅନ୍ତି ନ୍ହୋଇ ଶୁଦ୍ଧ ଚିତ୍ତ । କଲେ ସେ ଅନେକ ସୁକୃତ
ଏଭୂତେ ଧର୍ମ ମାର୍ଗ କରି । ଧନରୁ ଦେଥ ଦେଲେ ସାର ॥
ନୋହିବ ମୋ ହନ୍ତତ ନ ପାଇ । ବହିଲେ ଦୁଃଖେ ମଗ୍ନ ହୋଇ
ଏକ ଦିନେ ସେ ଦ୍ୱିଜବର । ଦୁଃଖରେ ତେଜ ନିଜ ପୁର
ବନସ୍ତେ ପ୍ରବେଶ ହୋଇଲା । ଏମନ୍ତେ ମଧ୍ୟାହ୍ନ ହୋଇଲା ॥
ବୃକ୍ଷରେ ଅତି ଅର୍ଥେହୋଇ । ତଡାଗେ ମିଳିଲକ ଯାଇ ॥

ତର୍ଥ ଜଳକୁ ଚାନ କର । ସନ୍ତତ ଦୁଃଖ ମନେ ଧର ॥
ବସନ୍ତେ ଦୃଢ଼ ବ୍ରତ ବନ୍ଧ । ସନ୍ୟାସି ଏକ ମିଳେ ତର୍ଥ ॥
ସେ ଯତି ଜଳ ପାନ କଲେ । ବ୍ରାହ୍ମଣ ତା ପାଶେ ମିଳିଲେ
ଚରଣେ କର ନମସ୍କାର । ସମ୍ମୁଖେ ଉଭା ଦ୍ୱିଜବର ।୭୩॥

ଯତିରୁବାଚ ।

ଯତି ପୁଛଇ ବ୍ରାହ୍ମଣକୁ । କିପା କରୁଛ ରୋଦନକୁ ॥ ୭୪
ହେ ବିପ୍ର କି ଚିନ୍ତା ତୋହର । ହୋଇଛୁ ଅତି ବଳଥାର
ଆପଣା ଦୁଃଖର କାରଣ । ସତ୍ୟରେ କହ ହେ ବ୍ରାହ୍ମଣ ॥

ବ୍ରାହ୍ମଣଉବାଚ ।

ବ୍ରାହ୍ମଣ ବଚନକ ବନ୍ଧ । ସେ ଯତି ଅଗ୍ରତେ କହନ୍ତି ୭୫
ହେ ଯତି କି କହିବି ମୁହିଁ । ପୂର୍ବ ପାପୁ ଏ ଦୁଃଖ ହୋଇ
ମୋହର ପୂର୍ବ ପିତୃମାନେ । ଦୁର୍ଭିକ୍ଷ ଏକ୍ଷୁ ଯେନ ମନେ ॥
ମୁ ଦେବା ଜଳ ଭୃଷ୍ଣ କର । ନିଷ୍ଠେ ପିଅନ୍ତି ବସ୍ତୁର ॥
ଦେବ ଦ୍ୱିଜାଦିମାନେ ମୁହିଁ । ଦେବାର ନଦେଖନ୍ତି କେହି
ସନ୍ତତ ଦୁଃଖରେ ପ୍ରାଣକୁ । ତେଜିବ ଅଭିଲ ବନକୁ ॥
ଜୀବନ ଧନ ଗୃହ କୁଳ । ସନ୍ତାନ ବିନା ଏ ବିକଳ ॥
ଯେବଣ ଥିଲୁ ମୁ ପାଳିବି । କି ଅବା ବୃକ୍ଷକୁ ସେପିବି ॥
ମୋର ଦୁଷ୍କର୍ମ ହେତୁମାନେ । ବନ୍ଧ୍ୟା ହୁଅନ୍ତି ଯେନମନେ
ଯେ ଫଳ ମୋ ଗୃହେ ଆସିବ । ସେ ଶିଘ୍ରେ ଶୁଷ୍କ ହୋଇଯିବ
ସୌଭାଗ୍ୟ ସନ୍ତତ ବନ୍ଧନ । ମୋ ଜୀବେ ନାହି ପ୍ରୟୋଜନ ॥
ଏମନ୍ତ କହି ଯତି ପାଶେ । ଦୁଃଖେ ପୀଡିତ ସେ ବିଶେଷେ
ଉଚ୍ଚରେ ରୋଦନ କରିଲା । ତା ଦେଖି ଯତି ଦୟା କଲା ॥
ସେ ଯତି ଯୋଗଧ୍ୟାନ କଲେ । ତା ଭାଲ ଅକ୍ଷର ଜାଣିଲେ
ସମସ୍ତ ଜାଣି ସେହୁ ଯତି । ବିପ୍ରକୁ କହିଲେ ଭାରତୀ ॥

ଯତିରୁବାଚ ।

ହେ ବିପ୍ର ତୁମ୍ଭର ଅଦୃଷ୍ଟ । ମୁହିଁ ଦେଖିଲି କରି ସ୍ପଷ୍ଟ ।
ସପ୍ତ ଜନ୍ମ ପର୍ଯ୍ୟନ୍ତେ । ତୋ ପୁତ୍ର ନୋହେ କଦାଚିତେ
ସନ୍ତାନ ଅଜ୍ଞାନକୁ ଚେତ । ବଳିଷ୍ଠ କର୍ମଗତି ହେତ ।
ଏଣୁ ବିବେକ ଆଶ୍ରେ କର । ସଂସାର ବାସନାରୁ ତର ।
ସଗର ଅଙ୍ଗରଜ ବେନ । ପୂର୍ବରେ ଏ ସନ୍ତତି ହେନ ।
ପାଇଲେ କଷ୍ଟ ରୂପେ ଦୁଃଖ । ଏରୂପେ ସନ୍ତାନରୁ ସୁଖ
କୁଟୁମ୍ବ ଆଶ ଏଣୁ ମୁଞ୍ଚ । ସନ୍ୟାସ କରି ସୁଖ ସଞ୍ଚ ।୮।

ବ୍ରାହ୍ମଣଉବାଚ ।

ଶୁଣି ବ୍ରାହ୍ମଣ ସେ ଯତିଙ୍କି । କହନ୍ତି ବିନୟ ଭକତିକି ।
କିସ ହୋଇବ ବିବେକରେ । ପୁତ୍ରକୁ ଦିଅ ଦୟା କରେ ।
ନୋହିଁଲେ ଶୋକେ ତୁମ୍ଭ ଅଗ୍ରେ । ପ୍ରାଣ ମୁଁ ହରାଇବି ଶୀଘ୍ରେ
ପୁତ୍ରାଦି ସୁଖ ଯେଣୁ ହିନ । ସନ୍ୟାସ ଶୁଷ୍କ ବୋଲି ଜାଣ ।
ପୁତ୍ର ପୌତ୍ରାଦିର ସହିତ । ଗୃହସ୍ଥ ସରସ ଏ ଖ୍ୟାତ ।
ବ୍ରାହ୍ମଣ ଆଗ୍ରହ ବଚନ । ଶୁଣି କହିଲେ ତପୋଧନ ।୯୪।
ବିଧାତା ପ୍ରତିକୂଳ ହେବୁ । ଯେସନେ ନୃପ ଚିତ୍ରକେତୁ ।
ଅନ୍ୟନ୍ତ କଷ୍ଟକୁ ପାଇଲେ । ତେସନ ଦୈବ ସୁତ ଲଭେ
ତୋ ସୁଖ ନୋହିଁବ ପୁତ୍ରରେ । ଏଣୁ ପଣ୍ଡିତ ବଳାତ୍କାରେ
ମୋର ଯେ ଅର୍ଥି ହେଲ ତୁମ୍ଭେ । ସମର୍ଥ ନ ଦେବାକୁ ଆମ୍ଭେ
ଦ୍ୱିଜଙ୍କ ଆଗ୍ରହ ଦେଖିଣ । ଏକ ଫଳକୁ ତତକ୍ଷଣ ।୯୯।
ଦେଇଣ ବୋଇଲେ ଭାର୍ଯ୍ୟାକୁ । ଭକ୍ଷଣ କରାଅ ଫଳକୁ
ଏ ଫଳ ଭକ୍ଷଣରୁ ସୁତ । ଜନ୍ମିବ ହୋଇବ ପ୍ରାପତ ।୧୦୧।
ସତ୍ୟ ଶଉଚ ଦାନ ଦୟା । ଏକ ଭୋଜନ ତୁମ୍ଭ ପ୍ରିୟା ।

ବରିଷ ପର୍ଯ୍ୟନ୍ତେ ଜୀଇବ । ତେଣୁ ସ୍ୱାମୀଙ୍କୁ ଲଭିବ ॥
ଏମନ୍ତ କହି ଯୋଗୀ ଗଲେ । ବ୍ରାହ୍ମଣ ବୃକ୍ଷକୁ ଅଇଲେ ॥
ପତ୍ନୀକି ଦେଇ ଫଳ ଦେଲେ । ବ୍ରାହ୍ମଣ କେଉଁ ଆଡେ ଗଲେ
କୁଟିଳା ତାହାର ତରୁଣୀ । ସଖି ଆଗରେ କାନ୍ଦେ ପୁଣି ॥
ମୋର ଏ ନୋ ଦେହ ଯୋଗ । ଫଳ ନ ଭୁଞ୍ଜେ କଦାଚିତ
ଫଳ ଭକ୍ଷଣେ ଗର୍ଭ ହେବ । ଏ ଦେହ ଉଦର ବଢ଼ିବ ॥
ଅନ୍ୟ ଭୋଜନ ଅସାମର୍ଥ୍ୟ । ହୋଇବ ଏ ମୋହର ପଥ୍ୟ
ସକଳ ଏଥୁ ମୋର ଗୃହ । କାର୍ଯ୍ୟକୁ କେ କରିବ କହ ॥
ହେବ କଷ୍ଟରୁ ଏ ଗ୍ରାମରେ । ଯାଉ ପତନେ ବେଗରେ
କେମନ୍ତେ ସିବ କହ ସହ । ଗର୍ଭିଣୀ ଯେବେ ହେବି ମୁହିଁ
ଏ ଗର୍ଭ ଶୁଣିଙ୍କ ପରାଇ । ସହିଲେ ହେଉବ ମୁଁ କେହୁ ॥
ଏ ଗର୍ଭ ଜନ୍ମିଲେ ଉଦରେ । ମରିବ ମୁହିଁ ପ୍ରସବରେ ॥
ପ୍ରସବ ଦୁଃଖକୁ ଡରଇ । ସହିବି ମୁଁ କେଉଁ କୁମାରୀ ॥
ମୁଁ ମନ୍ଦ ସ୍ୱପନେ କେବଳ । ଅଜନ୍ମା ହୋଇବ ସକଳ ॥
ସତ୍ୟ ବଧିତ ଅଛ ବୋଧ । କେତେବେଳେ ହୋଇବ ଆବଧି
ପୋଷିତ ଦ୍ୱିଗୁଣ ଜନନ । ପାଳନ ଅତ୍ୟନ୍ତ ଗହନ ॥
ବଧବା ବନ୍ଧ୍ୟା ନାରୀମାନେ । ଏ ସୃଷ୍ଟି ବୋଲି ଯାଣି ମନେ
ଏକୂଟେ ବନ୍ଧୁ ଘୋଷ ଭଣି । ସେ ଫଳ ନ ଭକ୍ଷିଲ ପୁଣି ॥
ପଠ ପ୍ରଛନ୍ନେ ସେ ଫଳକୁ । ଭକ୍ଷିଲ ବୋଲି କହେ ତାକୁ
ଘରେକ ଗୃହକୁ ଜଗିମା । ଆସନ୍ତେ ସ୍ୱଭଗ୍ରୁକୁ ପେନ ॥
ମୋହର ବର୍ତ୍ତ ଚନ୍ଦ୍ରାହେଲା । ବୋଲିଣ ଅଗ୍ରରେ କହିଲା ॥
ଏ ଦୁଃଖେ ଦୁର୍ବଳ ମୋ ଦେହ । ହେ ଭଗ୍ନୀ କି କରିବ କହ
ଶୁଣି କନିଷ୍ଠା ଭଗ୍ନୀ କହେ । ଗର୍ଭକୁ ବହି ଅଛୁ ମୁହିଁ ॥
ପ୍ରସବ ହେଲେ ମୋ ନନ୍ଦନ । ତୁମ୍ଭଙ୍କୁ ଦେବି ମନେ ଘେନ
ସେ କାଳ ପର୍ଯ୍ୟନ୍ତେ ଗୃହରେ । ଗର୍ଭିଣୀ ପରାୟେ ଗୁପ୍ତରେ

ମୃତଖଣ ଥାଅ ତୁ କନ୍ଦିନ୍ତେ । ଏମନ୍ତ ଯୋଗାଉଛୁ ମୋତେ
ମୋ ଦ୍ଵିଜ ପଠକ ତୁ ଧନ । ତଅ ସେ ଦେବେ ପୁତ୍ର ଦାନ
ଛ ମାସ ଗର୍ଭ ହେଲା ନାଶ । ମୋ ପଠ କରିବେ ପ୍ରକାଶ ॥
ନ ଦ୍ୟରେ ଆସି ତୋ ଗୃହକୁ । ଖିର ମୁଁ ଦେବି ସେ ପୁତ୍ରକୁ
ଏ କଥା ସତ୍ୟ ବୁଝିବାକୁ । ଧେନୁକୁ ଖୁଆଇ ଫଳକୁ ॥
ସେ କଥା ସେହୁ ବୁଝେ ସବୁ । କଲା ସେ ସ୍ତ୍ରୀଙ୍କ ମୁଖରୁ
ଏ ଅନ୍ତେ କାଳବଶୁ ସୁତ । ହେଲା ତା ଭଗ୍ନୀ ଗର୍ଭୁଁ ଜାତ
ତା ପଠ ଗୁପତେ ଆଣିଲା । ସେ ପୁତ୍ର ଧୁନ୍ଧୁଳିକି ଦେଲା ॥
ଧୁନ୍ଧୁଳୀ ଭର୍ତ୍ତାକୁ କହିଲା । ସୁଖେ ମୋ ପୁତ୍ର ଜନ୍ମ ହେଲା
ପଠଙ୍କ ଅନୁଗ୍ରହ ବଳେ । ଲୋକର ସୁଖୀ ହେଲେ ଭଲେ ॥
ସେ ଦ୍ଵିଜ ଜାତ କର୍ମ କଲା । ବ୍ରାହ୍ମଣେ ବସ୍ତ୍ର ଦାନ ଦେଲା
ଗୃହର ନାନାବାଦ୍ୟ ଗୀତ । ମଙ୍ଗଳ ହୋଇଲା ବହୁତ ॥
ଧୁନ୍ଧୁଳୀ ଭର୍ତ୍ତାକୁ କହଇ । ମୋହର ସ୍ତନେ କ୍ଷୀର ନାହିଁ ॥
ଆନ ଦୁଗ୍ଧରେ ଏହୁ ସୁତ । ପୋଷଣ କରିବ କେମନ୍ତ ॥
ମୋ ଭଗ୍ନୀ ମୃତଗର୍ଭ ହୋଇ । ରହିଛି ବାଳକ ନ ପାଇ ॥
ଡାକିଣ ରଖ ଘରେ ତାକୁ । ପୋଷିବ ସେ ତୁମ୍ଭ ପୁତ୍ରକୁ ॥
ପୁତ୍ର ପୋଷଣ ଲାଗି ଚଳ । ତା ଚଣ୍ଡ କଲା ସନମତ ୧୪୪
ପୁତ୍ରକୁ ଧୁନ୍ଧୁକାରୀ ନାମ । ଜନନୀ ଦେଲା ବହୁ ପ୍ରେମ ॥
ତଦନ୍ତେ ତିନମାସ ଗଲା । ତାଙ୍କୁ ସମ୍ଭାର ଆପେ କଲା ॥
ଜନେ ଯେ ଆଶ୍ଚର୍ଯ୍ୟ ଦହିଲେ । ଦେଖିବା ଇଚ୍ଛାରେ ଆଇଲେ
ସେ ଧେନୁ ପୁତ୍ର ପ୍ରସବିଲା । ତା ଦେଖି ବିପ୍ର ତୋଷ ହେଲା
ସେ ଦିବ୍ୟ ସର୍ବାଙ୍ଗ ସୁନ୍ଦର । ନିର୍ମଳ କନକ ସଦୃର ॥
ବୃଦ୍ଧ ହୋଇଲେ ଭାଗ୍ୟ ଜାତ । ହୋଇଲା ଦ୍ଵିଜର ବୈଖତ
ଧେନୁରୁ ଜାତ ଏ ବାଳକ । ଦେବତା ରୂପି ଏ କୌତୁକ
ବଧି ବଣରୁ ଏ ଗୁପତ । ଚକିତ ହୋଇଲା ବଷାତ ॥
ଦେଖିଣ ଗୋ ସମ କର୍ଣ୍ଣକୁ । ଗୋକର୍ଣ୍ଣ ନାମ ଦେଲେ ତାକୁ

ସେ ବେଦନ ସୁତେ କେତେ କାଳେ । ତରୁଣ ଅବସ୍ଥା ଦେଖିଲେ
ଗୋକର୍ଣ୍ଣ ନାମେ ଯେଉଁ ସୁତ । ହୋଇଲା ସୁଜ୍ଞାନ ପଣ୍ଡିତ
ଧୁନ୍ଧୁକାରୀ ନାମ ନନ୍ଦନ । ସତ୍ୟ ରହିତ କର୍ମ ହୀନ ୧୫୯
ଅତ୍ୟନ୍ତ ମହା ଖଳ ହେଲା । ଅଭକ୍ଷ ଭକ୍ଷଣକୁ କଲା ।
କ୍ରୋଧ ଦୁଷ୍ଟ ଅହଙ୍କାର । ଭୁଞ୍ଜଇ ବାମ ହସ୍ତେ ଧରି ।
ସର୍ବ ଜନରେ ଦ୍ୱେଷ କରେ । ଚୋର ବୃତ୍ତିରେ ଦ୍ରବ୍ୟ ହରେ
ସେ ମୂଢ଼ ଅନଳ ଲଗାଇ । ପର ମନ୍ଦିରକୁ ଦହଇ ।୧୬୦।
ଲମ୍ପଟା କରି ସୁତଗଣ । କୂପରେ ପକାଇ ତକ୍ଷଣ ।୧୬୧।
ହିଂସା ଅର୍ଥରେ ଶସ୍ତ୍ର ଧରେ । ଦୀନ ଅନ୍ଧକୁ ପୀଡ଼ା କରେ ।
ଚଣ୍ଡାଳ ସଙ୍ଗତ ନିତ୍ୟରେ । ପାଶକୁ ଧରି ଜୀବ ମାରେ ।
କୁକ୍କୁର ଧରା ନଶି ତାର । ସଙ୍ଗତେ କରଇ ସଞ୍ଚର ।
ବେଶ୍ୟା ସଙ୍ଗରେ ହୋଇ ମତ୍ତ । ନାଶିଲା ପିତାଙ୍କର ବିତ୍ତ ।
ପିତା ମାତାଙ୍କୁ ଦିନେ ମାରି । ଗୃହରୁ ଧନ ନେଲା ହରି ।
ପିତା ତା ଦୁଃଖରେ କୃପଣ । ଯେଣୁ ହୋଇଲା ଧନ ହୀନ ।
ଉଚ୍ଚରେ ରୋଦନକୁ କଲା । ଏମନ୍ତ ବଚନ କହିଲା ।
କୁପୁତ୍ର ହେଲେ ଦିଏ ଦୁଃଖ । ପୁତ୍ର ନୋହିଲେ ବହୁ ସୁଖ
କେବଣ ଠାବେ ମୁ ରହିବି । କେଉଁ ସ୍ଥାନକୁ ମୁହିଁ ଯିବି ।
କେ ମୋର ଦୁଃଖକୁ ଫେଡିବ । ତେଣୁ ମୁ ତ୍ୟଜିବି ଏ ଜୀବ
ହା କଷ୍ଟ ହେଲା ଉପସ୍ଥିତ । ଏରୂପେ କାନ୍ଦିଲା ବହୁତ ।
ସେ କାଳେ ସୁଜ୍ଞାନ ପଣ୍ଡିତ । ଗୋକର୍ଣ୍ଣ ହେଲେ ଉପସ୍ଥିତ
ବୈରାଗ୍ୟ ଦେଖାଇ ପିତାଙ୍କୁ । ବୋଧି କହିଲେ ବଚନକୁ
ହେ ତାତ ସଂସାର ଅସାର । ଏ ଦୁଃଖ ରୂପ ମୋହ କର ।
କେ ସୁତ କାହାର ଏ ଧନ । ସଂସାରେ ନାହିଁଟି ପ୍ରମାଣ ।
ଯେ ପୁଣି ସ୍ନେହଯୁକ୍ତ ହୁଏ । ଜ୍ୱଳନ ତାହାର ନଷ୍ଟରେ
ଯେ ନୃପ ଚକ୍ରବର୍ତ୍ତୀ ହୋଇ । ତାହାର କିଛି ସୁଖ ନାହିଁ ।

ସକଳ ନର ନାଥ ଯେନ୍ତୁ । ଦୈବ ତା ପୁଣ ଅବା କାହୁଁ ।
ସଂସାରେ ବୈରାଗ୍ୟକୁ ବହ । ଏକାନ୍ତେ ରହ ବସିଁ ଥାଇ ।
ଏମନ୍ତେ ମୁକ୍ତି କେ ତାହାର । ମୂର୍ଖ କେବଳ ମନେ କର
ତ୍ୟଜ ସନ୍ତାନର ମୋହକୁ । ମୋହରୁ ଯାଇ ନରକକୁ ।
ଏ ଦେହ ଅବଶ୍ୟ ପତନ । ବନକୁ ଯାଅ ତେଜି ସର୍ବ ।
ଗୋକର୍ଣ୍ଣ ବଚନ କର୍ଣ୍ଣରେ । ସେନ କହନ୍ତି ପିତା ଧୀରେ ।
ହେ ବାବୁ କି କହୁ ବଚନ । ଏ ତତ୍ତ୍ୱ କହ ଶୁଦ୍ଧ ମନ
ଅତ୍ୟନ୍ତ ଶଠ ପଙ୍ଗୁ ମୁହିଁ । ସ୍ନେହ ପାଶରେ ବନ୍ଧ ହୋଇ
ଆପଣା ଅର୍ଜିତ କର୍ମରେ । ପଡ଼ିଲି ଏ ଅନ୍ଧ କୂପରେ ।
ହେ ପୁତ୍ର ବୁଦ୍ଧ ଦୟାନିଧି । ଉଦ୍ଧର ଦେଇ ଜ୍ଞାନ ବୁଦ୍ଧି ।

ଗୋକର୍ଣ୍ଣଉବାଚ ।

ଗୋକର୍ଣ୍ଣ ତାତ ବାକ୍ୟ ଶୁଣି । କହଇ ପ୍ରସନ୍ନ ବାଣୀ
ରୁଧିର ଅସ୍ଥି ମାଂସ ଯୁକ୍ତ । ଦେହରେ ତ୍ୟଜ ଅଭିମତ ।
ଜାୟା ତନୟ ଧନାଦରେ । ମମତା ତ୍ୟଜ ବନ୍ଧନରେ ।
କ୍ଷଣ ଭଙ୍ଗୁର ଏ ଜଗତ । ଦେଖି ବୈରାଗ୍ୟେ ହୁଅ ଭକ୍ତ ।
ଭକ୍ତିରେ ଅତି ନିଷ୍ଠା କର । ଏ ମାୟା ମୋହକୁ ପାସୋର
ଭଜ ସନ୍ତତରେ ଧର୍ମକୁ । ତେଜ ଏ ସଂସାର କର୍ମକୁ ।
ସାଧୂ ଚରଣେ ସେବା କର । କାମ ତୃଷ୍ଣାକୁ ପରହର ।
ପର ଦୋଷ ଗୁଣ ଚିନ୍ତନ । ହେ ତାତ ତେଜଣ ବହନ ।
ଶ୍ରୀହରି ସେବା କଥା ରସ । ପାନ କରଣ ହୁଅ ତୋଷ ।
ଏମନ୍ତ ପୁତ୍ର ବଚନରେ । ଗୃହକୁ ତେଜଣ ସତ୍ୱରେ ।
ଷଷ୍ଠି ବରଷ ସେ ବ୍ରାହ୍ମଣ । ମତକ ସ୍ଥିର କରି ପୁଣ ।
ହରି ସେବାରେ ସ୍ଥିତ ହୋଇ । ନିଯୁକ୍ତ କରି ନିଜ ମନ ।
ଦଶମସ୍କନ୍ଧ ପଠନରେ । ମଜିଲା ଶ୍ରୀକୃଷ୍ଣ ପଦ୍ମରେ ।୨୦୧।

ନେନେ ଦେହ୍ନ ମାର୍ଗେ ଗଲ । ଭଣିଲେ ପଦ୍ମନାଭ ଦେବ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ ଶ୍ରୀଭାଗବତ ମହାତ୍ମ୍ୟ ନିରୂପଣେ ବିପ୍ର ମୋକ୍ଷଣେ ନାମ ଚତୁର୍ଥୋଃ ଅଧ୍ୟାୟଃ ।



## ପଞ୍ଚମ ଅଧ୍ୟାୟ ॥

ସୂତଉବାଚ ।

କହନ୍ତି ସୂତ ମହାମୁନି । ଶୁଣ ଶୌନକ ମହାଜ୍ଞାନୀ ॥ ୧ ॥
ପିତାର ମରଣରେ ଅନ୍ତେ । ସେ ଧୁନ୍ଧୁକାରୀ ଯେ ଏକାନ୍ତେ ।
ମାତାକୁ ତାଡ଼ନ୍ତ କରଇ । କହଇ ଦେଖ ଜନନୀ ଶୁଣ ॥ ୩ ॥
ପିତା ଅର୍ଜିତ ଧନ ଯେତେ । କାହିଁ ରଖିଛୁ କହ ମୋତେ
ସେ ଦ୍ରବ୍ୟ କରିଥିଲେ ବ୍ୟୟ । ତୋତେ ମୁଁ ମାରିବି ନିଶ୍ଚୟ
ଏମନ୍ତ ପୁତ୍ର ବାଣୀ ଶୁଣି । ଭୟ ଦୁଃଖ ଲଭି ବ୍ରାହ୍ମଣୀ ୬ ॥
ରାତ୍ରରେ କୂଟରେ ପଡ଼ିଲା । ତେଣୁ ସେ ପ୍ରାଣକୁ ଛାଡ଼ିଲା ॥
ଏଥି ଅନ୍ତରେ ସେ ଗୋକର୍ଣ୍ଣ । ତୀର୍ଥ ଯାତ୍ରାକୁ ବାହାରିଣ ॥
ଯୋଗ ଜ୍ଞାନକୁ ମନେ ଧରି । ମିତ୍ର ଅରିର ସମ କରି ।
ସୁଖ ଦୁଃଖକୁ ସମ ମଣି । ତୀର୍ଥରେ ବୁଲେ ଯେ ଭ୍ରମଣି ।
ଏଥି ଅନ୍ତରେ ଧୁନ୍ଧୁକାରି । ଗୃହରେ ପଞ୍ଚ ବେଶ୍ୟା ଧରି
ରହିଲା ଉଗ୍ର କର୍ମ କରି । ବେଶ୍ୟା ପୋଷଣ ମନେ ଧରି ।
ଧନେ ସରିଲା ମାନସେଣ । ବେଶ୍ୟାଙ୍କୁ ଦେବା ଆଭରଣ ॥
ଆପଣା ମୃତ୍ୟୁ ନ ବିଚାରି । କାମରେ ହୋଇ ଅନ୍ଧ ପରି ॥

ଦ୍ରବ୍ୟ ହରଣ ନିମନ୍ତେର । ଗୃହକୁ ବାହାରିଲେ ଯେବେ ।
ସେବରଇ ଏଣୁ ତେଣୁ ଖଣ୍ଡି । ଗୃହରେ ହେଲ ଉପଗତ ।
ଅନେକ କନକ ଭୂଷଣ । ବେଶ୍ୟାଙ୍କୁ ଦେଲା ସେ ତୋଷଣ
ସେ ବହୁ ଦ୍ରବ୍ୟ ଦେଖି ରାତ୍ରେ । ବେଶ୍ୟାଏ ବିଚାରିଲେ ଚିତ୍ତେ
ନିଶ୍ଚେ ଏ କରୁଅଛି ଚୋର । ରଜା ଦଣ୍ଡିବେ ଜାଣେ ଧର ।
ଏହାକୁ ପ୍ରାଣରେ ମାରିବେ । ଆମ୍ଭର ଦ୍ରବ୍ୟ ହରି ନେବେ
ଏ ଯେତେ ଦ୍ରବ୍ୟ ରକ୍ଷଣକୁ । କରିବା ମାରଣ ତାହାକୁ ।
ସକଳ ଦ୍ରବ୍ୟ ଗୁପ୍ତେ ଧର । ପଳାଇ ଯିବା ଆନ ପୁର ।
ଏମନ୍ତେ ବିଚାରଣ ମନେ । ଶୟନ କାଳେ ଏକ ଦିନେ ।
ରଜ୍ଜୁରେ ବାନ୍ଧଣ ଦେହକୁ । କଣ୍ଠେ ଲଗାଇ ପାଞ୍ଚକୁ ।
ଏରୂପେ ମାରଣ ଉପାୟ । ଅନେକ କଲେ ବେଶ୍ୟାଚୟ ।
ବେଗରେ ଚୋର ନ ମରନ୍ତେ । ବେଶ୍ୟାଏ ଚିନ୍ତା କଲେ ଚିତ୍ତେ
ଅନେକ ଅଗ୍ନି ଜେଗେ ଆଣି । ଭୂଣ୍ଡରେ ଭର ଦେଲେ ପୁଣି
ସେ ଅଗ୍ନି ଲାଗି ଦୁଃଖୀ ହେଲ । ଆକୁଳେ ପ୍ରାଣ ବହିଗଲ ।
ଅତ ହାହାସି ବେଶ୍ୟା ମାନେ । ସେ ଶବ ପୋତିଲେ ଯତନେ
ସେ କାଳେ ଏହୁ ଗୁପ୍ତ କଥା । ଜଣା ନ ପଡିଲା ସର୍ବଥା ।
ଜନେ ପୁଛନ୍ତେ ସେ କହିଲେ । ଦୂରକୁ ଆମ୍ଭ ପ୍ରିୟ ଗଲେ
ଧନ ଅର୍ଜନ ଲାଗି ଚିତ୍ତେ । ଆସିବେ ବରଷକ ଅନ୍ତେ ।
ଏ ହେତୁ ପ୍ରଶସ୍ତିନ କର । ଯେ ବ୍ୟଭିଚାର ନାରୀଙ୍କର ।
ସ୍ୱାସ୍ଥ୍ୟ କେବେ ନ ଯେତନ । ଯେଜନଲେ ନଷ୍ଟେ ନାଶଯିବ
କାମିନୀମାନଙ୍କର ରୀତ । ରସ ବର୍ଜନ କାମୀଙ୍କର । ୩୫ ।
ଅମୃତ ପରିବେ ସୃଜଇ । ଅତିହ ମାଧୁର୍ଯ୍ୟକୁ ବହି ।
ହୃଦୟ ତାଙ୍କ କ୍ଷୁର ଧାର । କେ ପ୍ରିୟ ଅବା ନାରୀଙ୍କର ।
ସେ ବେଶ୍ୟାଗଣେ ସେହି ଧନ । ସମସ୍ତ ସଙ୍ଗ୍ରହ କରଣ ।
ଅନ୍ୟ ଦେଶକୁ ପଳାଇଲେ । ନିଶ୍ଚିନ୍ତ ହୋଇଣ ରହିଲେ

ଏ ଅନ୍ତେ ସେହୁ ଧୂନ୍ଧୁକାର । ବହୁତ କୁକର୍ମ ଆଚରି ।
ପ୍ରେତ ସ୍ୱରୂପକୁ ଧଇଲା । ସେ ଭାତତନ୍ତ ରୂପ ହେଲା ।
ଦଶ ଦିଗରେ ନିରନ୍ତରେ । ଧାଇଲା ଅତି ଖର ତରେ ।
ଶୀତ ଖରାରେ ଦୁଃଖି ହୋଇ । କ୍ଷୁଧା ତୃଷାକୁ ଦେହେ ବହି
ଦୈବକୁ ନିନ୍ଦେ ପୁଣ ପୁଣ । କାହୁଁ ନ ପାଇଲା ଶରଣ ।
ଗୋକର୍ଣ୍ଣ କେତେ କାଳ ଅନ୍ତେ । ଭ୍ରାତାର ମରଣ ଶୁଣନ୍ତେ
ଅନାଥ ଜାଣି ସେ ଦୟାରେ । ଶ୍ରାଦ୍ଧ କରାଇଲେ ଗୟାରେ
ଯେତେକ ତୀର୍ଥରେ ମିଳନ୍ତି । ତା ନାମେ ପିଣ୍ଡ ଦାନ ଦେନ୍ତି
ଏରୂପେ ଭ୍ରମି ସେ ଗୋକର୍ଣ୍ଣ । ପୁରକୁ କଲେ ଆଗମନ ।
ଆପଣା ଘର ଅଗଣାରେ । ଶୟନ କଲେ ସେ ରାତ୍ରରେ ।
ତହୁଁ ଇତର ଜନମାନେ । ତାଙ୍କୁ ନ ଦେଖିଲେ ନୟନେ
ସେ ଧୁନ୍ଧୁକାର ଗୋକର୍ଣ୍ଣକୁ । ଜାଣିଣ କରନ୍ତୁ ନିଦ୍ରାକୁ ।
ଅତ୍ୟନ୍ତ ରୌଦ୍ର ଶରୀରକୁ । ନିଶାର୍ଦ୍ଧେ ଦେଖାଏ ତାହାଙ୍କୁ
କେତେବେଳେ ସେ ମେଷରୂପ । କେତେବେଳେ ହସ୍ତୀସ୍ୱରୂପ
ଥରେ ମହିଷି ରୂପଧର । କେତେ ବେଳେ ଇନ୍ଦ୍ରଙ୍କ ପର
ଥରେ ସେ ଇନ୍ଦ୍ର ସମ ଜ୍ୱୋତ । ପୁଣି ସେ ପୁରୁଷ ଆକୃତ
ଦେଖି ଏମନ୍ତ ଉତପାତ । ଗୋକର୍ଣ୍ଣ ଧୈର୍ଯ୍ୟର ସହିତ ।
ହୋଇ ଭାଳିଲେ ସେ ମନରେ । ଏହୁ କେ ଦୁର୍ଗତିକ ଧରେ
ଏରୂପେ କରି ନିଶ୍ଚୟକୁ । ବଚନ ରଚିଲେ ତାହାକୁ ।

ଗୋକର୍ଣ୍ଣଉବାଚ ।

ସତ୍ତ୍ୱରେ କେରୁ ଉଗ୍ରମୂର୍ତ୍ତି । ଦେଖାଅ ବହୁଅଛୁ ରାତ୍ର ।
କି ପାପ କର୍ମର ଦୁଃଖରେ । ଏ ଦଶା ପାଇଲ ସଂସାରେ ।
ପ୍ରେତ ପିଶାଚ କି ରାକ୍ଷସ । ସତ୍ୟରେ ଆମ୍ଭଙ୍କୁ ରୁ ଭାଷ ।

ସୂତଉବାଚ ।

ସୂତ କହନ୍ତି ଶୌନକରେ । ଶୁଣ ଏକ ଚିତ୍ତେ ମୋଠରେ
ଏରୂପେ ପୁଛନ୍ତେ ଗୋକର୍ଣ୍ଣ । ଉଚେ କାନ୍ଦିଲା ପୁଣ ପୁଣ ।
କଥା କହାଂନିଣ ଅଶକ୍ତ । ତେଣୁ କହିଲା ସଙ୍କ୍ଷି ମାତ୍ର ।
ଶୁଣି ଗୋକର୍ଣ୍ଣ ଜଳାଞ୍ଜଳି । ସିଞ୍ଚିଲେ ତାହା ପରେ ତୋଳି
ଯେ ଜଳ ପଡି ପାପ ନାଶି । ବଚନ କହିଲା ବିଶେଷି ।

ପ୍ରେତଉବାଚ ।

ମୁହିଁ ତୁମ୍ଭର ଜ୍ୟେଷ୍ଠ ଭ୍ରାତ । ମୋ ନାମ ଧୁନ୍ଧୁକାରୀ ଖ୍ୟାତ
ନିଜ ଉଗ୍ରାର କର୍ମ ଦୋଷ । ମୋର ବ୍ରହ୍ମତ୍ୱ କଲି ନାଶ ।
ମୋ ପାପ କର୍ମ ସଂଖ୍ୟା ନାହିଁ । ରହନ୍ତୁ ଅଜ୍ଞାନକୁ ବହି ।
ମୁଁ ସର୍ବ ଲୋକଙ୍କ ହିଂସାକାର । ବେଶ୍ୟାଙ୍କ ହସ୍ତେ ପ୍ରାଣହାର
ଏ ଯୋଗୁ ପ୍ରେତ ଦେହ ବହି । ଲଭୁଛି ଏ ଦୁର୍ଦ୍ଦଶା ମୁହିଁ ।
ବାତ ଆହାରେ ମୋ ଜୀବନ । ଫଳ ପ୍ରାପତ କର୍ମାଧୀନ ।
ହେ ଭ୍ରାତ କୃପାସିନ୍ଧୁ ତୁହି । ଉଦ୍ଧର ମୋତେ ଦୟା ବହି

ଗୋକର୍ଣ୍ଣଉବାଚ ।

ତୁମ୍ଭ ନିମନ୍ତେ ଗୟା କ୍ଷେତ୍ର । ପିଣ୍ଡ ମୁଁ ଦେଲି ବିଧିମତେ
ତେଣୁ ନୋହିଲ କିପା ମୁକ୍ତ । ଏ ଯେଣୁ ଆଶ୍ଚର୍ଯ୍ୟ ମୋ ଚିତ୍ତେ
ଗୟା ଶ୍ରାଦ୍ଧରେ ମୁକ୍ତ ଯେବେ । ନୋହିଲ ଗତି ନାହିଁ ତେବେ
ହେ ପ୍ରେତ ଏଥିକି ଉପାୟ । କହ ତୁ ନ କର ସଂଶୟ ।

ପ୍ରେତଉବାଚ ।

ଏମନ୍ତେ ଗୋକର୍ଣ୍ଣଙ୍କ ବାଣୀ । ଶୁଣି ସେ ପ୍ରେତ ପୁଣ ଭଣି ।
ଶତ ସଂଖ୍ୟାରେ ଗୟା ଶ୍ରାଦ୍ଧ । କଲେ ମୋ ମୁକ୍ତି ନୋହେ ସିଦ୍ଧ

ଏ ଭେଦ ଆନ ଉପାୟକୁ । ଅଟର ଈଶ୍ୱର ମନକୁ ॥
ଏରୂପେ ତାର ବାକ୍ୟ ଶୁଣି । ଗୋକର୍ଣ୍ଣ ସବିସ୍ମୟେ ଭଣି ॥
ହେ ପ୍ରେତବର ଚିନ୍ତା ବର୍ଜ୍ୟ । ହୋଅଛି ଯତ୍ନ ଏବେ ନାଶ
ଏଣୁ ମହାକୁ ତୋର ଗତି । ଅନ୍ୟ ଚେଷ୍ଟା ଘନ ମତି ॥
ଏବେ ତୁ ନିଜ ସ୍ଥାନେ ଯାଅ । ନିର୍ଭୟ ହୋଇ ରହି ଥାଅ
ତୋହର ମୁକ୍ତି ସାଧନକୁ । କରିବି ଉପାୟ ମାନଙ୍କୁ ।୮୫।
ଧୁନ୍ଧୁକାରି ଏ ବଚନକୁ । ଶୁଣିଣ ଗଲା ସ୍ୱ ସ୍ଥାନକୁ ॥
ଗୋକର୍ଣ୍ଣ ଏ ସବୁ ଚିନ୍ତିଲେ । ରାତ୍ରେରେ ନିଦ୍ରା ନ ଲଭିଲେ
ପ୍ରଭାତୁ ଗୋକର୍ଣ୍ଣଙ୍କୁ ଦେଖି । ଜନେ ହୋଇଲେ ଅତି ସୁଖୀ
ଆସିଣ ପାଶରେ ବସିଲେ । କୁଶଳ ପୁଚ୍ଛାପୁଚ୍ଛି ହେଲେ ॥
ଧୁନ୍ଧୁକାରିର ଚରିତକୁ । ଯେ ଯାହା ଜାଣିଥିଲେ ତାକୁ ॥
[illegible] କଥା । ଶୁଣି ଗୋକର୍ଣ୍ଣ ପୋତେ ମଥା
[illegible] । ଯେ ଜ୍ଞାନ ବ୍ରହ୍ମବାଦମାନେ
ଉତ୍ତମ ଶାସ୍ତ୍ରକୁ ଖୋଜିଲେ । ତା ମୁକ୍ତି କେହୁ ନ ଦେଖିଲେ
ତେଣୁ ସେ ସର୍ବେ ତାହା ମୁକ୍ତି । ସୁପୃଚ୍ଛା ଅର୍ଥେ କଲେ ମତି
ସୂର୍ଯ୍ୟଙ୍କୁ ପ୍ରଶ୍ନ କରିବା । ସେ ଯାହା କହିବେ ପାଳିବା ॥
ଗୋକର୍ଣ୍ଣ ସୂର୍ଯ୍ୟଙ୍କ ବେଗକୁ । ସ୍ତମ୍ଭିଣ କରାଇଲେ ତାଙ୍କୁ ॥
ହେ ଜଗ ସାକ୍ଷୀ ଦିବାକର । ତୁମ୍ଭଙ୍କୁ ମୋର ନମସ୍କାର ॥
ଏ ଧୁନ୍ଧୁକାରିର ମୁକତି । କାରଣ କହ କୃପା ପତି ।୯୮।
ଶୁଣି ତା ପ୍ରଭୁ ଦିବାକର । ଦୂରୁ କହିଲେ ସ୍ଫୁଟଗିର ।
ଶ୍ରୀ ଭାଗବତ ଶ୍ରବଣରେ । ମୁକତି ହେବ ତା ସତ୍ୱରେ ॥
ଏ ଯେତେ ସପ୍ତାହ ବିଧାନ । କର ହୋଇଣ ସାବଧାନ ॥
ଏମନ୍ତ ସୂର୍ଯ୍ୟଙ୍କର ବାଣୀ । ସମସ୍ତେ ମନ ଦେଇ ଶୁଣି ॥
ହୋଇଲେ ଯତ୍ନରେ ଏ କଥା । କରିବା ସୁଖରେ ସର୍ବଥା
ଗୋକର୍ଣ୍ଣ ନିଶ୍ଚୟକୁ କଲେ । ଏ ଶାସ୍ତ୍ର ପାଠେ ପ୍ରବର୍ତ୍ତିଲେ ॥

ସେ କଥା ଶ୍ରବଣ ଅର୍ଥରେ । ଦେଶ ଗ୍ରାମରୁ ଜନେ ଖରେ
ଆଇଲେ ପୁଣି ପଙ୍ଗୁ ଅନ୍ଧେ । ଅଜ୍ଞ ମୂରୁଖ ମନ୍ଦା ବୃନ୍ଦେ ।।
ପାତକ କ୍ଷୟ କରିବାରେ । ଏମାନେ ଆଇଲେ ସତ୍ୱରେ ।।
ଏ ସଭା ହୋଇଲା ବସ୍ତ୍ରାରେ । ବ୍ରହ୍ମ ଆଶ୍ଚର୍ଯ୍ୟ ହେଲେ ସୁରେ
ତେବଣ କାଳେ ସେ ଗୋକର୍ଣ୍ଣ । ଆସନ ଉପରେ ବସିଣ ।।
ପଢ଼ିଲେ ଭାଗବତ ଶାସ୍ତ୍ର । ସେ କାଳେ ଆସି ଧୁନ୍ଧୁ ପ୍ରେତ
ସ୍ଥାନ ନ ଦେଖି ବସିବାକୁ । ରୁନ୍ଧିଲ ସମସ୍ତ ଦିଗକୁ ।।
ସେ ସ୍ଥାନେ ସପ୍ତଗ୍ରନ୍ଥି ଯୁକ୍ତ । ବଂଶକ ଦେଖିଲା ଉନ୍ନତ ।।
ତା ମୂଳ ଦେଶି ଛିଦ୍ରେ ଗଲା । ଶ୍ରବଣ ଇଚ୍ଛାରେ ରହିଲା ।।
ପବନ ରୂପ ହେଣୁ ତାର । ମାନସେ କଲା ସେ ବିଚାର ।।
ବାତ ବହିଲେ ଉଡ଼ିଯିବ । ବାହାରେ ହେବେ ମୂର୍ଖ ଥିବ
ଏ ବେଣୁ ବଂଶର ଅନ୍ତରେ । ରହିଲା ଚିତ୍ତ ଅତି ସ୍ଥିରେ ।
ଏଥୁ ଅନ୍ତରେ ସେ ଗୋକର୍ଣ୍ଣ । ପରମ ବୈଷ୍ଣବ ବ୍ରାହ୍ମଣ ।
ମାନଙ୍କୁ ମୁଖ୍ୟ ଶ୍ରୋତାକରି । ପ୍ରଥମ ସ୍କନ୍ଧ ଆଦି ଧରି ।।
ସୁସ୍ୱରେ ବ୍ୟାଖ୍ୟାନ ସେ କଲେ । ଶ୍ରୋତାଏ ଶ୍ରବଣେ ମଜ୍ଜିଲେ
ଦିନାନ୍ତେ ସେ କଥା ରଖିଲେ । ତଦନ୍ତେ ଉତ୍ସବ ବନ୍ଦିଲେ
ସକଳ ଜନ ସନ୍ତ ମାନେ । ହେତୁ ଅଛନ୍ତି ତୋଷମନେ ।
ଶବଦ କରି ଏକ ଗଣ୍ଠି । ବାଂଶର ବେଗେ ଗଲା ଫୁଟି ।
ଦ୍ୱିତୀୟ ଦିନର ଅନ୍ତରେ । ଦ୍ୱିତୀୟ ଗଣ୍ଠି ସେ ରୂପରେ ।
ଶବଦ କରିଣ ଫୁଟିଲା । ଏମନ୍ତେ ସପ୍ତ ଗଣ୍ଠି ଗଲା ।।୧୬୪।।
ଏରୂପେ ସେହୁ ଧୁନ୍ଧୁକାରି । ଦ୍ୱାଦଶ ସ୍କନ୍ଧ ଶୁଣିକରି ।
ପ୍ରେତ ଦେହରୁ ମୋକ୍ଷ ହେଲା । ଦିବ୍ୟ ରୂପକୁ ସେ ଧଇଲା
ତୁଳସୀ ମାଳାରେ ମଣ୍ଡିତ । ପୀତ ବସନରେ ସଂଯୁତ ।
ନବୀନ ଘନ ଶ୍ୟାମ ମୂର୍ତ୍ତି । ମୁକୁଟ କୁଣ୍ଡଳ ସୁଶୋଭିତ ।
ଏରୂପେ ପ୍ରଣମିତ ହୋଇ । ଭ୍ରାତାକୁ ବଚନ କହଇ ।

ହେ ଭ୍ରାତ ତୁମ୍ଭେ ଧନ୍ୟ ବନ୍ଧୁ । ହେତୁ ଦୁଃଖରୁ କଲ ତ୍ରାହି
ଧନ୍ୟ ଏ ଭାଗବତ ସାର । ମୋ ପ୍ରେତ ପୀଡ଼ା କଲ ଦୂର ॥
ବୈକୁଣ୍ଠ ବାସ ଫଳ ପାଇ । ଧନ୍ୟ ଏ ସପ୍ତାହ ଅଟଇ ॥
ସପ୍ତାହ ଶୁଅନ୍ତେ ଶ୍ରବଣ । ପାତକେ ଡୋଳନ୍ତି କମ୍ପେଣ ॥
ଆମ୍ଭର ପ୍ରତ୍ୟକ୍ଷ ଏ କଥା । କରବ ଏଷଣି ସର୍ବଥା ।୧୩୪।
ବଚନ ମାନସ କର୍ମରେ । ଜାତ ଜେ ହୁଅନ୍ତି ସଂସାରେ ॥
ଆର୍ଦ୍ର ଶୁଷ୍କ ଲଘୁ ସ୍ଥୂଳ । ଏମନ୍ତ ପାତକର କୁଳ ।୧୩୫।
ଏ ଶାସ୍ତ୍ର ଶ୍ରବଣେ ଦହଇ । ଅଗ୍ନି ଯେସନେ କାଷ୍ଠ ଦହି ॥
ଏହୁ ଭାରତ ବରଷରେ । ଦେବ ପଣ୍ଡିତ ସମାଜରେ ।
ଏ ଶାସ୍ତ୍ର ଯେହୁ ନ ଶୁଣିଲା । ତାହାର ଜନ୍ମ ବ୍ୟର୍ଥ ହେଲା ॥
ସଂସାର ବଙ୍କରେ ଲୋଟନ । ପୋଷଇଣ ଥାଇ ଯେଉଁ ଜନ ।
ତାହାର ଜୀବନ ନିରର୍ଥ । ଏ ମହା ଭାଗବତ ଅର୍ଥ ॥
ଏହାଙ୍କୁ ତତ୍ତ୍ୱରେ ଯେ ଧ୍ୟାଇ । ସେ ନର ମୁକ୍ତିକି ଲଭଇ ॥
ଏମନ୍ତ କହୁ ସେ ପୁରୁଷ । ବିମାନ ହେଲା ପରବେଶ ।
ହୋଇଛନ୍ତି ଅତି ପବିତ୍ର । ବୈକୁଣ୍ଠ ବାସିରେ ଶୋଭିତ
ଦେଖି ଅଚିନ୍ତ୍ୟ ସର୍ବ ଜନେ । ସେ ମୁକୁନ୍ଦାର ଯୋଗନେ
ବିମାନ ଉପରେ ବସିଲେ । ତା ଦେଖି ଗୋକର୍ଣ୍ଣ ପୁଚ୍ଛିଲେ

ଗୋକର୍ଣ୍ଣଉବାଚ ।

ହେ ବୈକୁଣ୍ଠ ବାସି ଜନେ । ମୋର ବଚନ ଯେନ ମନେ
ଏଠାରେ ବହୁ ଶ୍ରୋତ ଜଣେ । ଅଛନ୍ତି ନିର୍ମଳ ହୋଇଣ ॥
ଏକା ଜଣକେ ତାଙ୍କ ପାଇଁ । ବିମାନ ଆଣିଲ କିପାଇଁ ।
ସମସ୍ତ ଜନଙ୍କ ଶ୍ରବଣ । ଧର୍ମତ ସମାନ ପ୍ରମାଣ ୧୪୧ ।
କିହେତୁରୁ ହେଲା ଫଳ ଭେଦ । କହ ହେ ହରି ଭକ୍ତ ବୃନ୍ଦ

ଭରଦ୍ୱାଜ ଉବାଚ ।

ଏମନ୍ତେ ଦ୍ୱିଜ ଭକ୍ତି ଶୁଣି । କହିଲେ ଅତି ମୃଦୁ ବାଣୀ ॥
ଶ୍ରବଣ ଭେଦ ଏଥି ଯାହିଁ । ଫଳ ଭେଦକୁ କହୁଥାଇ ॥
ସମସ୍ତେ ଶ୍ରବଣକୁ କଲେ । ଏ ଅର୍ଥ ମଣି ନ ପାରନ୍ତେ ॥
ଏ ହେତୁ ଭେଦ ହେଲା ଫଳ । ପୁଣି ଶୁଣିଲେ ହେବ ଭଲ
ଯେଣୁ ଏ ପ୍ରେତ ଯାତ ଗତ । ବଡ଼ା ଆଧାରର ଦେଇ ମତ
ଶ୍ରବଣ କଲ ସ୍ଥିର ଚିତ୍ତେ । ମଣିଲ ଏ ଅର୍ଥ ଅତ୍ୟନ୍ତେ ॥
ତେଣୁ ଈଶ୍ୱର ଦୟା କଲେ । ବୈକୁଣ୍ଠ ଭୁବନକୁ ଦେଲେ
ଉତ୍ପତ୍ତି ଜ୍ଞାନ ହୋଏ ଯତ । ହେଳାରେ ଶାସ୍ତ୍ର ଶୁଣା ଯତ
ସନ୍ଦେହମନ୍ତ୍ର ଯାହା ହୋଏ । ବ୍ୟଗ୍ର ଚିତ୍ତରେ ଜପ ତପେ ॥
ଯାହା କହିଲି ଦେବଙ୍କ ବାଧ । ସେରୂପେ ଅବିଶ୍ୱସ୍ତ ଶ୍ରାନ୍ତ ॥
ଅତେଇ ହତେକ ଧ୍ୟାନ ଯତ । ଅନାସ୍ଥରରେ କୁଳ ଯତ ॥
ବିଶ୍ୱାସ ଗୁରୁ ବଚନରେ । ଦୀନ ଭକ୍ତିନା ଆପଣାରେ ।
ମନୁ ସକଳ ଯୋଗ ଯତ୍ନ । କଥାରେ ନିଷ୍ଠେ ହୃଦୟ ।
ଏ ଅଧ୍ୟାୟ ଯତନେ ପାଳିଲେ । ଶ୍ରବଣ ଫଳ ଲଭିବ ଭଲେ
ଏମନ୍ତ ଆନ ଭାବେ ନରେ । ପୁଣି ଏ ଶାସ୍ତ୍ର ଆଉ ଥରେ ॥
ଶୁଣିଲେ ବୈକୁଣ୍ଠ ଲଭଇ । ଏକଥା ନିଶ୍ଚୟ ଅଟଇ ॥
ପରମ ସାଧୁ ସେ ଗୋକର୍ଣ୍ଣ । ତୁମ୍ଭଙ୍କୁ ପ୍ରଭୁ ଭଗବାନ ॥
ଅବଶ୍ୟ ଗୋଲୋକକୁ ଦେବେ । ଏମନ୍ତ କହି ଗଲେ ସର୍ବେ
ପୁଣ କେତେହେ ଦିନ ଗଲା । ଶ୍ରାବଣ ମାସ ଆସି ହେଲା ॥
ଗୋକର୍ଣ୍ଣ ସପ୍ତାହ ବିଧାନ । ପୁଣି ଘଟିଲେ ଦେଇ ମନ ॥
ସପତ ରାତ୍ରି ବ୍ରତ କଲେ । ସେ ସବେ ସେ ଫଳ ଲଭିଲେ
ଶୁଣ ନାରଦ ସପ୍ତାହର । ଅଦ୍ଭୁତ ହେଲା ଯେ ପ୍ରକାର ॥
ଶ୍ରୀମନେ ଭକ୍ତଗଣ ସଙ୍ଗେ । ହରି ପ୍ରକଟ ହେଲେ ବେଗେ
ଜୟ ଶବଦେ ନମସ୍କାର । ସେ କାଳେ ଅନେକ ପ୍ରକାର ॥

ହରଷେ ଧର ପାଞ୍ଚ ଜନ୍ୟ । ଶବଦ କଲେ ଭଗବାନ ॥
ଆଶ୍ଲେଷ କରୁ ଗୋକର୍ଣ୍ଣଙ୍କୁ । ସେହୁ ପାଇଲେ ସାରୂପ୍ୟକୁ
ଆନନ୍ଦେ ଶ୍ରୋତାମାନେ ଥିଲେ । ସେ ହେତୁ ସ୍ୱରୂପ ଲଭିଲେ
ନବୀନ ଘନ ଶ୍ୟାମ ମୂର୍ତ୍ତି । କିରୀଟି କୁଣ୍ଡଳ ଶୋଭନ୍ତି ॥
ପୀତ ବସନରେ ଶୋଭନ । ବିବିଧ ଭୂଷଣେ ମଣ୍ଡନ ॥
ଶ୍ୱାନ ଚଣ୍ଡାଳ ଆଦି ହୋଇ । ସେ ଗ୍ରାମେ ଯେତେ ଥିଲେ ରହି
ଗୋକର୍ଣ୍ଣ ଠାରେ ଦୟା ବହି । ଏହାଙ୍କୁ ବିମାନେ ବସାଇ
ପେଷିଲେ ବୈକୁଣ୍ଠ ପୁରକୁ । ଯୋଗିଏ ଲଭନ୍ତି ଯାହାକୁ
ସପ୍ତାହ କଥା ମହିମାରେ । ପ୍ରୀତକ ବହି ହୃଦୟରେ ॥
ଭକ୍ତବତ୍ସଳ ଦେବ ହରି । ସଙ୍ଗତେ ଗୋକର୍ଣ୍ଣଙ୍କୁ ଧରି ॥
ଗୋପୀଜନଙ୍କ ଜନ୍ମ ବାସ । ହେଲେ ସେ ଗୋଲୋକେ ପ୍ରବେଶ
ପୂର୍ବେ ଅଯୋଧ ବସି ଗଣ । ଶ୍ରୀରାମ ସଙ୍ଗତ ହୋଇଣ ।
ଯେମନ୍ତ ଗଲେ ବୈକୁଣ୍ଠକୁ । ତେମନ୍ତ ଘେନ ଏମାନଙ୍କୁ ॥
ଯୋଗି ଅଗମ୍ୟ ଗୋଲୋକରେ । ପ୍ରବେଶ ହେଲେ ହରି ଧୀରେ
ଏ ପୁରେ ଚନ୍ଦ୍ର ସୂର୍ଯ୍ୟ ଦିବ । ମାନଙ୍କ ଗମନ ନିରୋଧ
ଶ୍ରୀ ଭାଗବତ ଶ୍ରବଣରେ । ସର୍ବେ ମିଳିଲେ ସେହି ପୁରେ ॥
ସପ୍ତାହ ଯଜ୍ଞ କଥନରେ । ସଂଚିତ ଉଜ୍ଜ୍ୱଳ ଭକ୍ତିରେ ।
ଏମନ୍ତ ଫଳର ମହିମା । କିସ କହିବା ନାହିଁ ସୀମା ॥
ଗୋକର୍ଣ୍ଣ କରତ ଅକ୍ଷରେ । ହେବନେ ହେ ଶୁଣନ୍ତି ଯେ ନରେ
ତାହାଙ୍କ ଗର୍ଭଗତ କ୍ଳେଶ । କେବେହେ ନୁହଇ ଅବଶ୍ୟ
ଜଳ ପବନ ପତ୍ର ଖାଇ । ଦେହକୁ ଅତ୍ୟନ୍ତେ ସୁଖାଇ ॥
ବହୁତ କାଳେ ଉଗ୍ରତପ । ଆଚର ଯୋଗ ଆଦି ତପ ॥
ଏମାନଙ୍କର ଯେଉଁ ଗତି । ମାନବେ ଲଭି ନ ପାରନ୍ତି ॥
ସପ୍ତାହ କଥା ଶ୍ରବଣରେ । ସେ ଗତି ଲଭନ୍ତି ସତ୍ୱରେ ॥
ଶାଣ୍ଡିଲ୍ୟ ନାମେ ମୁନିବର । ବସି ଚିତ୍ରକୂଟ ଉପର ॥ ୨୦ ॥

ବ୍ରହ୍ମ ଆନନ୍ଦ ହୋଇ ମୁକ୍ତ । ହେଉନ୍ତି ଏ ପୂର୍ବ ଚରିତ୍ର ।
ଅତି ପବିତ୍ର ଏ ଆଖ୍ୟାନ । ଯେ ଭାବେ କରନ୍ତି ଶ୍ରବଣ ।
ସକଳ ପାତକ ସେ ଦହି । ଅନ୍ତରେ ବୈକୁଣ୍ଠେ ରହଇ ।
ଶ୍ରାଦ୍ଧ କାଳରେ ଏ ଆଖ୍ୟାନ । ଯେ ଜନେ କରନ୍ତି ପଠନ
ତାହାର ପିତୃଗଣମାନେ । ତୃପ୍ତିକି ଲଭନ୍ତି ବହନେ ।
ଉତ୍ତମ କରି ଯେ ପଢ଼ଇ । ସେ ପୁଣ ଜନ୍ମ ନ ଲଭଇ ।
ଲଭଇ ଗୋଲୋକରେ ଠାବ । ଭଣିଲେ ପଦ୍ମନାଭ ଦେବ

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ ଶ୍ରୀଭାଗବତ ମହାତ୍ମ୍ୟ ନିରୂପଣେ ଗୋକର୍ଣ୍ଣ ଗୁଣ ବର୍ଣ୍ଣନେ ନାମ ପଞ୍ଚମ ଅଧ୍ୟାୟଃ ।



## ଷଷ୍ଠ ଅଧ୍ୟାୟ ॥

କୁମାର ଉବାଚ ।

ଶ୍ଳୋକଃ  ଅଥତେ ସଂପ୍ରବକ୍ଷ୍ୟାମଃ ସପ୍ତାହ ଶ୍ରବଣେ ବିଧିଂ ।
ସହାୟୈର୍ବସୁଭିଶ୍ଚୈବ ପ୍ରାୟଃ ସାଧ୍ୟାବଧିସ୍ମୃତଃ ।

ସନତ୍କୁମାର ଆଦି ପୁଣ । ନାରଦେ କହନ୍ତି ତୋଷେଣ ।
ଏ ଅତିନ୍ତ୍ର ସପ୍ତାହ ଶ୍ରବଣ । ବିଧି କହିବା ତୁମ୍ଭେ ଶୁଣ ।
ସହାୟ ଜନ ଦ୍ରବ୍ୟ ବିନା । ଏ ବିଧି ନୁହଇ ଘଟଣା ।
ଜ୍ୟୋତିଷ ତାଙ୍କ ମୁହୂର୍ତ୍ତକୁ । ପୃଚ୍ଛିଣ କରିବ ଯତ୍ନକୁ ।
ବିବାହ କାଳରେ ଯେସନେ । ବିତ୍ତ ଲଗାଇ ତୋଷ ମନେ
ତେମନ୍ତ ଏ ବିଧି କାଳରେ । ଦ୍ରବ୍ୟ କଳିବ ହରଷରେ ।

ଶ୍ରାବଣ ଭାଦ୍ରବ ଆଶ୍ୱିନ । କାର୍ତ୍ତିକ ମାର୍ଗଶିର ପୁଣ । ୭ ।
ଏ ନଅାରେ ଯେ ଏତ ମାସ । ଶ୍ରୋତାଙ୍କ ସ୍ପଷ୍ଟ ପ୍ରକାଶ ॥
ଯେଉଁଣ ମାସେ ଯାହା ଚେଳ । ସେ କଥା ମନେ ନ ହୋଇ
ସବା ଉଦମେ ଜନମାନେ । ସମ୍ଭାଯ ହେବେ ଏ ବଧାନ ॥
ସତ ଦଶକୁ ଏଥ ବାର୍ତ୍ତା । ସେଦିବ ତ ।ନ ଜଣ ତ ।
ହୃଷମ କଥା ଏଥି ହେବ । କୁଚ୍ଛମେ ଯେ ଜନ ଥାଣିବ ।
ଏ କଥା ଅଦ୍ଭୁତ କାଳରେ । ହୋଉଛୁ ବସୁର ମନରେ ।
ହେ ଉଗ୍ରହୁବ ଜନମାନେ । ଆଦର ସ୍ତ୍ରୀଛ ପୁତ୍ର ଜନେ ।
ଅପିଲ କଥା ଶ୍ରବଣକୁ । ପାଇବ ଶ୍ରବଣ ଯୋଗକୁ । ୧୮ ।
ପ୍ରଶ୍ନ ଦିନରେ ଜେ ବୈଷ୍ଣବେ । ନ ପୁଣ କୀର୍ତ୍ତନ ଉତ୍ସବ
ବୈରାଗୀ ଜନେ ଏମନଙ୍କୁ । ଉତ୍କଳ ଲେଖିଣ ପତ୍ରକୁ ।
ଦୁର୍ଲଭ ସାଧୁଙ୍କ ସମାଜ । ହେବ ସଚତ ସନ୍ତେ ଭେଜ ।
ଅପୂର୍ବ ରସରୂପ କଥା । ସେଠାରେ ହୋଇବ ସର୍ବଥା ।
ଶ୍ରୀ ଭଗବତ ଅମୃତକୁ । ପାନ କରିବାରେ ଇଷ୍ଟକୁ । ୨୦ ।
ଧନ୍ଦେ ଏଥି ପ୍ରେମ ବନ୍ଧ । ତୁମେ ଅସିବ ଶିଘ୍ର ହୋଇ ।
ତୁମ୍ଭର ଅବକାଶ ଯେବେ । ହୋଇବ ଶୁଣ ଦିନେ ତୁମ୍ଭେ ।
ଅବଶ୍ୟ ଏଥକୁ ଆସିବ । ହୋଇବ ଦୁର୍ଲଭ ଉତ୍ସବ । ୨୩ ।
ଏରୂପେ ବିନଯ ବଚନ । କହ ଡାକିବ ମାନୁଜନ । ୨୪ ।
ଅସିବା ଜନଙ୍କର ବାସ । ସ୍ଥାନକୁ କଳ୍ପିବ ଧନେଷ ।
ଗୃହରେ ଜାତେ ଅଛା ବନେ । କଥା ଶୁଣିବ ଛାତ୍ରମନେ
ଏ ଶାସ୍ତ୍ର ଶ୍ରବଣର ସ୍ଥଳ । କରିବ ଅତ୍ୟନ୍ତ ବହୁଳ । ୨୭ ।
ଏ ଭୂମି ସ୍ଥଳକୁ ଶୋଧିବ । ମାର୍ଜନା କରଣ ଲିପିବ ।
ଅନେକ ଗୈରିକର ଶିରେ । ମଣ୍ଡିବ ନାନା ଚିତ୍ରରେ ।
ସପ୍ତ ଦ୍ୱୀପ ଥାଉ ପଞ୍ଚ ଦିନ । ଆସନ କରିବ ସ୍ଥାପନ । ୩୦ ।
କଦଳୀ ବୃକ୍ଷରେ ମଣ୍ଡିତ । ମଣ୍ଡପ କରିବ ଉନ୍ନତ ।

ବିତାନ ଫଳ ପୁଷ୍ପ ଗଣେ । ମଣ୍ଡପ ମଣ୍ଡିବ ଯତନେ ।
ସ୍ତମ୍ଭ ପାଶରେ ଧ୍ୱଜମାନ । ଚୂଡରେ କରିବ ମଣ୍ଡନ ।୩୩।
ମୂଲ୍ୟତା ଦ୍ରୋଣା ପଞ୍ଚ ବାଦ୍ୟେ । କୃଷ୍ଣା ବାନ୍ଧିବ ଚହୁପାଶେ
ମଣ୍ଡପ ତଥି ସପ୍ତ ଲୋକ । ରଚିଲେ କରିବ ବିବେକ ।
ସେ ସପ୍ତ ଲୋକେ ବ୍ରହ୍ମରୂପେ । ବିରକ୍ତ ସଙ୍ଗେ ଛନ୍ତି ମିଶି ।
ଏମାନେ ଉତ୍ତମ ଆସନେ । ବସିଲେ ବସୁଥିବ ମନେ ।
ଏ ଅନ୍ତେ ବକ୍ତା ଯେଉଁ ଜନ । ତା ପାଇଁ ସ୍ଥାପିବ ଆସନ ।
ଉତ୍ତର ମୁଖ ହୋଇ ବକ୍ତା । ପୂର୍ବାଭି ମୁଖ ହୋଇ ଶ୍ରୋତା ।
ଅଥବା ବକ୍ତା ପୂର୍ବ ମୁଖ । ଶ୍ରୋତା ଉତ୍ତରେ କରି ମୁଖ ।
ନୋହିଲେ ଶ୍ରୋତା ବକ୍ତା ଦୁଇ । ବସିବେ ପୂର୍ବ ମୁଖ ହୋଇ
ଯେ ଦେଶ କାଳରେ ମଣ୍ଡିତ । ଶ୍ରୋତାରେ ହେହ୍ମମାନେ ବ୍ୟକ୍ତ
ବିରକ୍ତ ବୈଷ୍ଣବ ବ୍ରାହ୍ମଣ । ବେଦ ଶାସ୍ତ୍ରରେ ଯେ ନିପୁଣ ।
ଦୃଷ୍ଟାନ୍ତ କଥାରେ କୁଶଳ । ନିସ୍ପୃହ ଧୀର ସୁନିର୍ମଳ ।୩୪
ଏମନ୍ତ ଗୁଣବନ୍ତ ଜନେ । ବକ୍ତା କରିବ ତୋଷ ମନେ ।
ଅନେକ ଧର୍ମରେ ରହିଲ । ପାଷାଣ୍ଡ ସଙ୍ଗ ସ୍ତ୍ରୀର ରତ ।
ପଣ୍ଡିତ ହୋଇଲେ ହେ ଏ ନରେ । ଶ୍ରୀ ଭାଗବତ ଶ୍ରବଣରେ
ଯୋଗ୍ୟ ନୁହନ୍ତି କଦାଚିତେ । ଥିଲେ ହେ ତେଜିବ ତୁରିତେ
ଲୋକଙ୍କୁ ବୁଝାଇବା ଅର୍ଥେ । ସଂଶୟ ଛେଦ ଯେ ତୁରିତେ
ଏମନ୍ତ ପଣ୍ଡିତ ଜନଙ୍କୁ । ରଖିବ ବକ୍ତା ପାଖେ ତାଙ୍କୁ ।
ଏ ବ୍ରତ ଆରମ୍ଭ ଅର୍ଥକୁ । ଦିନକ ଆଗୁ ସେ ବକ୍ତାଙ୍କୁ ।
ଉପସ୍ଥିତ ବିଧି କରାଇବ । ଅକର୍ମ କଥା ନ କହିବ ।୫୨।
ଅରୁଣ ଉଦୟରୁ ବକ୍ତା । ଶ୍ରୀହରି ରୂପ କରି ଚିନ୍ତା ।୫୩।
ଶୌଚ ବିଧି ସ୍ନାନ ଆଚରିବ । ଯତ୍ନରେ ସନ୍ଧ୍ୟାଦି କରିବ ।
ବିଘ୍ନ ନାଶନେ ଗଣପତି । ପୂଜିବ ହୋଇ ଶୁଦ୍ଧ ମତି ।

ତର୍ପଣେ ପିତୃଙ୍କୁ ତୋଷିବ । ଦେଖି ସାମର୍ଥ୍ୟେ ଦାନ ଦେବ
ମଣ୍ଡଳ ଲେଖି ତହିଁ ମଧ୍ୟେ । କୃଷ୍ଣଙ୍କୁ ସ୍ଥାପି ଶତ୍ରୁ ପ୍ରୀତେ ॥
ମନ୍ତ୍ର ଅକ୍ଷର ଯଥା ମତେ । ପୂଜିବ ନାନା ଦ୍ରବ୍ୟଯୁକ୍ତେ ॥
ପ୍ରଣାମ ପ୍ରଦକ୍ଷିଣ କରି । ତଦନ୍ତେ ସ୍ତୁତିକି ଆଚରି ॥ ୫୯ ॥
ହେ ଦୟାନିଧି ଭଗବାନ । ଶୁଣ ମୋ ବିନତି ବଚନ ॥
ସଂସାରସାଗରେ ମୁଁ ପଡ଼ିଛି । କର୍ମ କୁମ୍ଭୀର ଗିଳୁଅଛି ॥ ୬୧ ।
ଏ ଯେଣୁ ଘୋଟିଛି ମୁଁ ଦୀନ । ଉଦ୍ଧର ହେ ଭଗବାନ ॥
ତଦନ୍ତେ ପଞ୍ଚ ଉପଚାରେ । ପୂଜିବ ଶ୍ରୀ ଭାଗବତରେ ॥
ତଦନ୍ତେ ଧରି ଶ୍ରୀ ଫଳକୁ । କୃତ୍ତ କରିବ ପ୍ରଣାମକୁ ॥
ପ୍ରସନ୍ନ ମନସକୁ ବାନ୍ଧି । ସ୍ତୁତି କରିବ ପୁଣି ତହିଁ ॥ ୬୫ ॥
ନମସ୍ତେ ଭାଗବତ ଶାସ୍ତ୍ର । ତୁମ୍ଭେ ଯେ ଶ୍ରୀକୃଷ୍ଣ ସାକ୍ଷାତ ॥
ସଂସାରୁ ତରିବା ନିମନ୍ତେ । ସ୍ୱୀକାର କଲି ଶୁଦ୍ଧଚିତ୍ତେ ॥
ହେ କୃଷ୍ଣ ତୁମ୍ଭର ମୁଁ ଦାସ । ନିର୍ବିଘ୍ନେ ପୁରାଅ ମୋ ଆଶ ॥
ଏରୂପେ କହି ସ୍ତୁତି ଗୀର । ବକ୍ତାଙ୍କୁ କରିବ ସତ୍କାର ॥
ପିନ୍ଧାଇ ବସନ ଭୂଷଣ । ସ୍ତୁତିକି ଆଚରିବ ପୁଣ ॥ ୭୦ ॥
ତୁମ୍ଭେ ଶୁକଦେବ ସାକ୍ଷାତ । ସକଳ ଶାସ୍ତ୍ରରେ ପଣ୍ଡିତ ॥
ସମସ୍ତ ବେଦ ତୁମ୍ଭେ ଜାଣ । କହୁ ଏ କଥା ପ୍ରକାଶିଣ ॥
ମୋ ମନର ଅଜ୍ଞାନକୁ ନାଶ । ଜଗତର ବନ୍ଧୁ ତୁମ୍ଭ ଯଶ ॥
ଏମନ୍ତ କହି ବକ୍ତା ଆଗେ । ଆଚରି ଶୁଭ ଅନୁରାଗେ ॥
ନିଜ ଶକ୍ତିରେ ନିଷ୍ଠମନେ । ଯତ୍ନେ ପାଳିବ ସପ୍ତାହରେ ॥
ଏ ଶାସ୍ତ୍ର କଥା ତତ୍ତ୍ୱ ଜାଣି । ହେବାକୁ ବିଶୁଦ୍ଧ ମାନସ ॥
ଦ୍ୱାଦଶାକ୍ଷର ମନ୍ତ୍ର ବିଜ । ଜପ କରିବ ପଞ୍ଚ ଦ୍ୱିଜ ॥ ୭୭ ॥
ବ୍ରାହ୍ମଣ ବୈଷ୍ଣବ ମାନଙ୍କ । ଅର୍ଚ୍ଚନ କରିବା ଜନଙ୍କୁ ॥
ପ୍ରଣାମ କରି ଅର୍ଘ୍ୟ ଦେବ । କର୍ତ୍ତା ଯେ ଆସନେ ବସିବ
ସେ କାଳେ ସ୍ତ୍ରୀ ଗୃହ ପୁତ୍ରେ । ବକ୍ତାଙ୍କୁ ନ ଧରିବ ଚିତ୍ତେ

ଶୁଦ୍ଧ ବୁଦ୍ଧିରେ ଏ କଥାକୁ । ଯେ ଶୁଣେ ଲଭେ ସ୍ୱର୍ଗକୁ
ବଲ୍ଲୀ ଛେଦ ଶାସ୍ତ୍ର ବିଧି ମତେ । ଚନ୍ଦନ ଦଣ୍ଡ ଦୂରଯନ୍ତ୍ରେ ॥
ସ୍ୱପ୍ନର କରଣ ପଢ଼ିବ । ମଧ୍ୟାହ୍ନେ ବିଶ୍ରାମ କରିବ ॥୮୯॥
ସେକାଳେ ସାଧୁ ବଇଷ୍ଣବେ । ଆନନ୍ଦେ କୀର୍ତ୍ତନ କରିବେ ।
ସମ୍ପ୍ରାପ୍ତ ଆଚରଣ ଜନ । ବିସ୍ମର କଥା ଆସ୍ୱାଦନ ॥
ହବିଷ୍ୟ ଅନ୍ନ ଏକ ଥରେ । କରିବ ଶୁଦ୍ଧ ମାନସରେ ॥
ମଳ ମୂତ୍ର ନୋହିବା ପାଇଁ । ଜଳ ଆଧାରେ ତୃପ୍ତ ହୋଇ
ସମର୍ଥ ହେବ ଯେଉଁ ଜନ । ସମ୍ପ୍ରାପ୍ତେ ନ କରି ଭୋଜନ ॥
କି ଅବା ଦୁଗ୍ଧ ଅମ୍ବୁ ପାନ । କରି ଶୁଣିମ ସାଧୁ ଜନ ॥
କି ଅବା ହେବ ଫଳାହାରୀ । ଅଥବା ଏକ ଭୁକ୍ତ କରି ॥
ଏହିତ ବିଧାନେ ପୂର୍ଣ୍ଣ ଯାହା । ଶ୍ରବଣେ ଆଚରିବ ତାହା ॥
ଉପବାସରେ ମନ ଚଳେ । ଶ୍ରବଣେ ପୂର୍ଣ୍ଣ ନୋହେ ଭଲେ ॥
ଏ ବେଘନ ଭୋଜନ କରିବ । କଥା ଶ୍ରବଣେ ପୂର୍ଣ୍ଣ ହେବ ॥
ସମ୍ପ୍ରାପ୍ତ ବ୍ରତ ଜନଙ୍କର । ନିୟମ ଶୁଣ ମୁନିବର ॥୯୪॥
ଯେ ବସ୍ତୁ ଦକ୍ଷାରେ ବିହୀନ । ସେ ନୋହେ ଏଥିକି ଭାଜନ
ଏ ବ୍ରତ ଅନୁସରିବା ନରେ । କଥାନ୍ତେ ଭୁଞ୍ଜିବ ପତ୍ରରେ ॥
ଶୟନ ଭୂମିରେ କରିବ । ବ୍ରହ୍ମଚର୍ଯ୍ୟରେ ମନ ଦେବ ॥
ଯେ କଥା ବ୍ରତ ଜନମାନେ । ଏତେକ ଶୁଣିବ ଯତନେ ॥
ଦ୍ୱିଦଳ ମଧୁ ଗରିଷ୍ଠାନ୍ନ । ଯେ ଦୁଷ୍ଟ ସ୍ୱଭାବରେ ଦୂଷଣ ॥
ଦଗ୍ଧାନ୍ନ ପୁଣ ଆରନାଳ । ବାର୍ତ୍ତାକୀ କଳମ୍ବ ତଇଳ ॥
କୁଷ୍ମାଣ୍ଡ ମସୂର ଜେ ମାଷ । ହଳଦୀ ଆଦ୍ର ଫଳାମିଷ ॥
ହିଙ୍ଗୁ ଜେ ପିଆଜ ରସୁଣ । ମୂଳା ମୃଣାଳ ମୂଳେ ପୁଣ ॥
ମତ୍ସର କାମ କ୍ରୋଧ ମଦ । ଲୋଭ ଅହଂକାର ବିଷାଦ ॥
କପଟ ମୋହ ଦମ୍ଭ କଥା । ଏମାନେ ଛାଡ଼ିବ ସର୍ବଥା ॥
ବୈଷ୍ଣବ ଗୁରୁ ଦେବ ଦ୍ୱିଜ । ଗୋବ୍ରାହ୍ମଣ ନାଗ ମହାରାଜ ॥
ଏହାଙ୍କୁ କେବେ ନ ନିନ୍ଦିବ । ଯେ ଜନ ବ୍ରତ ଆଚରିବ ॥

ପତତ ବଜ୍ରସ୍ପର୍ଶା ନାସ୍ତି । ଯେ ମ୍ଲେଚ୍ଛ ସ୍ଥାନ ବ୍ରତକାରୀ ।
ବ୍ରାହ୍ମଣ ଦ୍ୱେଷି ବେଦ ହୀନ । ଏହାଙ୍କୁ ନ କହ ବଚନ ।
ଆଜାବ ଶୌଚ ଦୟା ସତ୍ୟ । ଭଜନସ୍ତୁ ମୌନ ଧୀର ମତ୍ୟ
ଏ ବିଧାନକୁ ଆଚରିବ । ଯେ ଏହି ବ୍ରତ କରିଥିବ ।
ଦରିଦ୍ର ସେବି ସ୍ୱର୍ଗ୍ୟସ୍ଥାନ । ଆବର ପାପ କର୍ମ ଜନ ।
ଅନ୍ୟାସ୍ତବନ୍ତ ଯେଉଁମାନେ । ଶୁଣିବେ ମୁକ୍ତି ବାଞ୍ଛି ମନେ ।
ଅପୁତ୍ରବନ୍ତ ଏକ ପୁତ୍ରି । ଆବର ବନ୍ଧ୍ୟା ମୃତ ପୁତ୍ରୀ ।୧୧୭।
ଯେ ଗର୍ଭସ୍ରବା ଏତେ କାଙ୍କ୍ଷି ।' ଶୁଣିବେ ଯତ୍ନକୁ ଅଚର ।
ଯେ ଶୁଣେ ଏମନ୍ତ ବିଧିରେ । ଅକ୍ଷୟ ଫଳ ମିଳେ ତାରେ
ଏ ଶାସ୍ତ୍ର ସତ୍ୟ ଆୟୁଷ୍ମ । କୋଟି ଯଜ୍ଞର ଏହି ସମ ।
ଏରୂପେ ସପ୍ତାହ ବିଧାନ । ଅନ୍ତେ କରିବ ଉଦ୍ୟାପନ ।
ଜନ୍ମାଅଷ୍ଟମୀର ବିଧାନେ । ଫଳାର୍ଥି ପାଳିବେ ଯତନେ ।
ଯେ ଅବା ଅକିଂଚନ ଭକ୍ତ । କଲବୁ ଉଦ୍ୟାପନ ବ୍ରତ ।
ଯେଣୁ ସେ ନିଷ୍କାମନା ଚିତ୍ତ । ଶ୍ରବଣ ମାତ୍ରକେ ଅଟେବିତ୍ର ।
ଏରୂପେ ଏ ସପ୍ତାହ ଯାଗେ । ସମ୍ପୂର୍ଣ୍ଣେ ଶ୍ରୋତା ଏ ସବଗେ
ପୁରାଣ ବକ୍ତା ଏ ଶାସ୍ତ୍ରକୁ । ଭକ୍ତିରେ କରିବ ପୂଜାକୁ ।
ତୁଳସିମାଳ ଜେ ପ୍ରସାଦ । ଶ୍ରୋତାଏ ଦେବ ପାଇ ମୋଦ
ତଦନ୍ତେ ତାଳ ମୃଦଙ୍ଗକୁ । ବଜାଇ କରି କାର୍ଣ୍ଣିକୁ ।
ଅନ୍ୟୋନ୍ୟେ ପ୍ରଣମିତ ହୋଇ । ଜୟ ଶବଦେ ଗୀତ ଗାଇ
ଶଙ୍ଖାଦି ଧ୍ୱନି କରାଇବ । ଦ୍ୱିଜ ଯାଚକେ ଦାନ ଦେବ ।
ବିରକ୍ତ ହେଲେ ଶ୍ରୋତା ମନ । ଗୀତ ପଢିବ ଆର ଦନ ।
ଗୃହସ୍ଥ ହୋଇଥିଲେ ହୋମ । କରିବ ହେଜ୍ଞ ଶାନ୍ତ କର୍ମ ।
ପାୟସ ମଧୁ ତିଳ ଘୃତେ । ଏମାନ ଯେହ୍ନ ଶୁଦ୍ଧ ଚିତ୍ତେ ।
ଦଶମସ୍କନ୍ଧ ଶ୍ଲୋକ ଯେତେ । ଗଣି ଆହୁତି ଦେବ ତେତେ
ଅଥବା ଗାୟତ୍ରି ମନ୍ତ୍ରରେ । ହୋମ କରିଇ ବିପ୍ର କରେ ।

ତେଣୁ ଏ ଭାଗବତ ଶାସ୍ତ୍ର । ଗାୟତ୍ରି ସ୍ୱରୂପ ସାକ୍ଷାତ ୧୩୮
ହୋମକୁ ଅଶକ୍ତ ଯେ ହେବ । ହୋମ ସାମଗ୍ରୀ ବିପ୍ରେ ଦେବ
ଏ ଫଳ ସିଦ୍ଧ ବିଘ୍ନ ନାଶ । ନଉଜା ଧିକ ଯେ ବିଶେଷ ।
ଏମାନ ଇଚ୍ଛୁଣ ମନକୁ । ପଢିବ ସ୍ୱହସ୍ତ ନାମକୁ ।
ତେଣୁ ସେ ଫଳ ସିଦ୍ଧ ହୋଇ । ଏଥୁ ଅଧିକ ଆନ ନାହିଁ
ବ୍ରାହ୍ମଣ ଦ୍ୱାଦଶ ଜଣକୁ । ମଧୁ ପାୟସ ଭୋଜନକୁ । ୧୩୯
କରାଇ ଧେନୁ ସ୍ୱର୍ଣ୍ଣ ଦାନ । ଦେବ ହେବାକୁ ବ୍ରତ ପୂର୍ଣ୍ଣ ।
ଯେ ଦ୍ରବ୍ୟବନ୍ତ ହୋଇଥିବ । ସେ ଏହି ବିଧି ଆଚରିବ ।
ତ୍ରିପଳ ସୁବର୍ଣ୍ଣ ସିଂହକୁ । କରିଣ ପରେ ପୁସ୍ତକକୁ ।୧୪୦।
ରଖି ପୂଜିବ ଉପସ୍ଥରେ । ସହିତ କରି ଦକ୍ଷିଣାରେ ।
ଯେ ଯତଆତ୍ମା ଆଚାର୍ଯ୍ୟକୁ । ବସ୍ତ୍ର ଭୂଷାଦି ଦେଇ ତାଙ୍କୁ ।
ପୂଜା କରି ଯେ ଦାନ ଦିଏ । ସେ ଭବବନ୍ଧୁ ମୁକ୍ତ ହୁଏ ।
ସକଳ ତାପ ନିବାରଣ । ଏମନ୍ତେ ଏଦାନ ବିଧାନ ।
କରନ୍ତେ ଭାଗବତ ଶାସ୍ତ୍ର । ଫଳ ଦିଅନ୍ତି ଅତି ମାତ୍ର ।
ଯେ ଧର୍ମ ଅର୍ଥ କାମ ମୋକ୍ଷ । ସାଧନ ଅଟେ ଏ ପ୍ରତକ୍ଷ ।
କହିଲୁ ସକଳ ବିଧାନ । ଆଉକି ଶୁଣିବାକୁ ମନ । ୧୪୯।
ଏ ଭାଗବତଙ୍କ ଚରିତ । ଭକ୍ତି ମୁକ୍ତିରେ ପ୍ରକାଶିତ ।

ସୂତଉବାଚ ।

କହନ୍ତି ସୂତ ମହାମୁନି । ଶୁଣ ଶୌନକ ସର୍ବଜ୍ଞାନି ।
ଯେ ସର୍ବ ପାତକ ନାଶଇ । ପବିତ୍ର ଭକ୍ତି ମୁକ୍ତି ଦାୟି ।
ଏମନ୍ତ ଭାଗବତ ଶେଷେ । କହୁଣ ଶ୍ରୋତାଙ୍କର ପାଶେ ।
ଯଥା ବିଧିରେ ଶ୍ରୀହରିଙ୍କେ । ବନ୍ଦିଲେ ଅନେକ ସ୍ତୁତିକ ।
ତଦନ୍ତେ ବଇରାଗ ଜ୍ଞାନ । ଅତ୍ୟନ୍ତେ ହୋଇଲେ ତରୁଣ ।

ଲକ୍ତି ଯେ ଅତ ପୁଷ୍ପବୃଷ୍ଟି । ଭକ୍ତଙ୍କ ହୃଦେ ହେଲେ ଧୀର
ସ୍ବ ମନୋରଥ ସିଦ୍ଧ ପାଇ । ନାରଦ କୃତ କୃତ୍ୟ ହୋଇ ॥
ପରମ ଆନନ୍ଦ ଲଭିଲେ । ସର୍ବାଙ୍ଗ ପୁଲକିତ ହେଲେ ॥
ବୈଷ୍ଣବ ସାର ଯେ ନାରଦ । ହୋଇଣ କଣ୍ଠ ଗଦ ଗଦ ॥
କରି ଅଞ୍ଜଳୀ କରି ଧୀରେ । କହିଲେ ଯେ ସନତ୍କୁମାରେ ॥

ନାରଦଉବାଚ ।

ତମ୍ଭାଙ୍କୁ ନମେ ଦୟା କରି । ଏ ସବଂ କହିଲ ବିସ୍ତାରି ।
ଏଣୁ ମୁ ଧନ୍ୟ ହେଲ ଲୋକେ । କି ଅବା କହିବ ଅଧିକେ ॥
ଏ ଭାଗବତ ସପ୍ତାହରେ । ହରିଙ୍କି ଲଭିଲି ପାଶରେ ।
ସକଳ ଧର୍ମରୁ ଶ୍ରବଣ । ସାର ଏ ବୋଲି ମନେ ଜାଣ ॥
ଯେଣୁ ବୈକୁଣ୍ଠ ସ୍ଥିତ ହରି । ମିଳିଲେ ଶ୍ରବଣରୁ କରି ॥

ସୂତଉବାଚ ।

ସୂତ କହନ୍ତି ଶୁଣ ଶତେ । ଶୌନକ ମୁନିଙ୍କ ଅଗ୍ରତେ ।
ବୈଷ୍ଣବ ଉତ୍ତମ ନାରଦ । ଏମନ୍ତେ କରନ୍ତେ ସମ୍ବାଦ ॥
ଭ୍ରମଣ କରି ଯୋଗେଶ୍ୱର । ଆଇଲେ ଶୁକ ମୁନିବର ॥
ବୟସ ଷୋଡଶ ବର୍ଷର । ଜ୍ଞାନ ସାଗର ନିଶାକର ॥
କଥା ପ୍ରାନ୍ତରେ ସୁଚରିତ । ବର୍ଣ୍ଣିନେ ହୋଇ ତୋଷଚିତ୍ତ ॥
ପ୍ରେମରେ ମନ୍ଦ ମନ୍ଦ କରି । ଶ୍ରୀ ଭାଗବତଙ୍କୁ ଉଚ୍ଚାରି ॥
ଏରୂପେ ବ୍ୟାସଙ୍କର ସୁତ । ସେ ସ୍ଥାନେ ହେଲେ ଉପଗତ
ସେ ସଭାସ୍ଥିତ ଜନମାନେ । ତେଜ ବିଲୋକି ତୋଷମନେ ॥
ଉଠି ସେ ଦେଲେକ ଆସନ । କରି ଅନେକ ସମ୍ମାନ୍ୟ
ପ୍ରୀତରେ ବ୍ରହ୍ମାଙ୍କ କୁମର । ପୂଜା କରିଲେ ତତପର ॥
ସନ୍ତୋଷେ ଆସନରେ ବସି । ଶୁକ ନିର୍ମଳ ବାଣୀ ଭାଷି ॥

ଶ୍ରୀଶୁକ ଉବାଚ ।

ନିଗମ କଳ୍ପବୃକ୍ଷ ଫଳ । ଶୁକ ମୁଖରୁ ଆସି ମିଳ ।
ଅମୃତ ଦ୍ରବରେ ହରସ । ଏ ଭାଗବତଙ୍କର ରସ ।।୮୨।।
ରସିକ ଭାବୁକ ହେ ଜନେ । ମୁକ୍ତି ପର୍ଯ୍ୟନ୍ତେ ସୁ ଯତନେ
ଏହାଙ୍କୁ ପୁଣ ପୁଣ ପିଅ । ତ୍ରିତାପ ଭୟକୁ ନ ପାଅ ।
ଏଥିରେ କପଟ ବିହୀନେ । ରହିଛି ଧର୍ମ ଅନୁକ୍ଷଣେ ।
ମତ୍ସର ହୀନ ସାଧୁଙ୍କର । ଜାଣିମା ଯୋଗ୍ୟ ଶୁଦ୍ଧ କର ।
ତ୍ରିତାପ ନାଶନ ପରମ । ବ୍ରହ୍ମ ବସ୍ତୁଙ୍କ ଏ ଆଶ୍ରମ ।।୮୩।।
ଏ ବେଦବ୍ୟାସଙ୍କର କୃତ୍ୟ । ଯେ ଶୁଣେ ହୋଇ ଶୁଦ୍ଧଚିତ୍ତ
ତକ୍ଷଣେ ହରିଙ୍କ ହୃଦରେ । ବାନ୍ଧି ରଖଇ ନିରନ୍ତରେ ।
ନିର୍ମଳ ଜ୍ଞାନ ପରମାଣ । ପରମ ହଂସ ଧର୍ମ ପୁଣ ।।୮୪।।
ଯହିଂରେ ହୁଅନ୍ତି ଗାୟନ । ମହା ଭାଗବତ ପୁରାଣ ।
ବୈଷ୍ଣବ ଜନଙ୍କ ଏ ଧନ । ବୋଲିଣ ସାଧୁ ଜନେ ଘେନ
ଜ୍ଞାନ ବୈରାଗ୍ୟ ଭକ୍ତି ଯୁକ୍ତ । ନିଷ୍କାମ ଧର୍ମ ଯହିଂ ଖ୍ୟାତ
ଯେ ଏହା ଶୁଣି ପଢି ଧ୍ୟାଇ । ଭକ୍ତିରେ ମୁକ୍ତି ସେ ଲଭଇ ।
ସ୍ୱର୍ଲୋକ ସତ୍ୟ ଲୋକ ତେଜି । କୈଳାସେ ବୈକୁଣ୍ଠରେ ପୂଜି
ଏତ୍ତୁ ଆଶ୍ଚର୍ଯ୍ୟ ଗତି ନାହିଁ । ଏ ଘେନ ପିଅ ମନ ଦେଇ
ଶୁଣ ହେ ଭାଗ୍ୟବନ୍ତ ଜନେ । ଏହା ନ ଗୁପ୍ତ ନିଶି ଦିନେ

ସୂତଉବାଚ ।

ସୂତ କହନ୍ତି ତୋଷ ଭରେ । ଶୌନକ ମୁନିଙ୍କ ଅଗ୍ରରେ ।
ଶୁକଙ୍କ ଏ ବଚନ ଅନ୍ତେ । ସଭାର ମଧ୍ୟରେ ସାକ୍ଷାତେ ।
ପ୍ରହ୍ଲାଦ ଉଦ୍ଧବ ଅର୍ଜୁନ । ବଳନ୍ତି ଘେନ ଭଗବାନ ।
ପ୍ରକାଶ ହୋଇଲେକ ଆସି । ଦେଖି ନାରଦ ମହାଋଷି ।
ଶ୍ରୀହରି ଆଦି ସମସ୍ତଙ୍କୁ । ଆନନ୍ଦେ କଲେକ ପୂଜାକୁ ।

ଆସନେ ଶ୍ରୀକୃଷ୍ଣଙ୍କୁ ଦେଖି । ସକଳ ଋଷି ହୋଇ ସୁଖି ।
ଅଗ୍ରତେ କୀର୍ତ୍ତନ ବିହିଲେ । ଅନେକ ଉତ୍ସବକୁ କଲେ ।
ଉମାଙ୍କୁ ଯେହ୍ନ ଗଙ୍ଗାଧର । ସୁତଙ୍କୁ ଯେହ୍ନ ବେଦବର ।
କୀର୍ତ୍ତନ ଦେଖିବା ଇଚ୍ଛାରେ । ପ୍ରବେଶ ହୋଇଲ ସେହିଠାରେ
ପ୍ରହ୍ଲାଦ ଧରି କରତାଳ । ଉଦ୍ଧବ ବାହେ କଂସାତାଳ ।
ସ୍ୱରକୁଶଳ ଚନ୍ଦ୍ରସୁନ । ବଂଶୀ ବାଦନରେ ଉନ୍ମତ ।୨୦୨।
ସ୍ୱର ଆଳାପନ ଫାଲ୍ଗୁନ । ଭଦ୍ର ଯେ ମୃଦଙ୍ଗକୁ ଯେହ୍ନ ।
ଯେ ସନତ୍କୁମାରଙ୍କ ଗଣ । ଜୟ ଶବଦ ଉଚ୍ଚାରଣ ।
ଅଗ୍ରତେ ବ୍ୟାସଙ୍କ ନନ୍ଦନ । କହନ୍ତି ରସ ଭାବମାନ ।
ମଧ୍ୟେ ବୈରାଗ୍ୟ ଜ୍ଞାନ ଭକ୍ତି । ଉତ୍ତମ ତେଜରେ ନାଚନ୍ତି
ଆଶ୍ଚର୍ଯ୍ୟ ଏ କୀର୍ତ୍ତନ ସ୍ୱର୍ଗ । ହରି କହନ୍ତି ଦୟା ବନ୍ଧ ॥
ଭାବରେ ହୋଇଲି ମୁଁ ବଶ । ମୋଠାରୁ ବରକୁ ଅବଶ୍ୟ
ଯେହ୍ନ ଯେଣୁ ମୁଁ କୀର୍ତ୍ତନରେ । ପ୍ରୀତ ବହିଲି ଅତ୍ୟନ୍ତରେ
ଏମନ୍ତେ ଶ୍ରୀହରି ବଚନ । ଶୁଣି ସକଳ ସୁ ପ୍ରସନ୍ନ ।୨୧୦।
ହୋଇ ଆନନ୍ଦେ ବଚନକୁ । କହିଲେ ସ୍ୱୟଂ ମାଧବଙ୍କୁ ।
ସପ୍ତାହ କଥା ସମୟରେ । ଏ ଭକ୍ତମାନଙ୍କ ସଙ୍ଗରେ ।
ପ୍ରସନ୍ନ ମୂର୍ତ୍ତି ବହି ହରି । ବିଜେ କରିବ ନରହରି ।
ଏ ମନୋରଥକୁ ଆମ୍ଭର । ପୂର୍ଣ୍ଣ କରିବ ଚକ୍ରଧର ।୨୧୪
ସେରୂପେ ହେଉ ବୋଲି ହରି । ଅନ୍ତର୍ହିତ ହୋଇଲେ ହରି
ସୁତ ସନକ କୁମାରାଦି । ମୁନିଙ୍କ ଚରଣକୁ ବନ୍ଦି ।୨୧୬।
ନାରଦ ହୋଇଲେ ତୋଷମନ । ତଦନ୍ତେ ସେହୁ ମୁନିଗଣ ।
ଏ କଥା ମୃତ କରି ପାନ । କରଣ ମୋହ ବିନାଶନ ।
ଅନନ୍ଦ ପରିପୂର୍ଣ୍ଣ ଚିତ୍ତେ । ସମସ୍ତେ ଗଲେ ଯେଝା ମତେ ।
ସେ ଶୁକଦେବ ନିଜ ଶାସ୍ତ୍ରେ । ଭକ୍ତି କି ପୁତ୍ରଙ୍କ ସଙ୍ଗତେ ।
ରଖିଲେ ଯେଣୁ ଭାଗବତ । ସେବାରେ ବୈଷ୍ଣବଙ୍କ ଚିତ୍ତ ।

କ୍ଷଣେ ନ ତେଜନ୍ତି ଶ୍ରୀହରି । ଭକ୍ତ ବତ୍ସଳ ଚକ୍ରଧାରୀ ।
ଦାରିଦ୍ର ଦୁଃଖ ନାଶକନ୍ତି । ଏ ମାୟା ଧନ୍ଦାଘରେ ହତ ।
ପଡନ୍ତି ସଂସାର ସାଗରେ । ଏମନ୍ତ ଜନଙ୍କୁ ଶୁଭରେ ॥
ଏ ମହାଭାଗବତ ଶାସ୍ତ୍ର । ବର୍ଜନ କରୁଛନ୍ତି ନିତ୍ୟ । ୨୨୫ ।

ଶୌନକଉବାଚ ।

ଶୌନକ ଶୁଣି ସୂତ ଗୀର । ପୁଣି ପୁଚ୍ଛିଲେ ଏ ଉତ୍ତର ।
ହେ ଶୁକ ଦେବ ପରୀକ୍ଷିତ । ରାଜାଙ୍କୁ ଏହୁ ଭାଗବତ ।
କହିଲେ କେବଣ କାଳରେ । ଆଉ ଗୋକର୍ଣ୍ଣଙ୍କ ଠାରେ
କେବଣ ଦିନେ ଏ ଚରିତ । କହିଲେ କହ ମୋ ଅଗ୍ରତ
ବ୍ରହ୍ମାଙ୍କୁ କେବେ ନାରଦେ । ବଖାଣ କଲେ ଅତ୍ୟନ୍ତ ର
ଏ କଥା କହ ତୁମ୍ଭେ ମୋର । ମନୁ ସଂଶୟ ଦୂର କର ।

ସୂତଉବାଚ ।

ସୂତ କହନ୍ତି ଶୌନକଙ୍କୁ । ଶୁଣ କହିବା ଏ କଥାକୁ ।
ଶ୍ରୀକୃଷ୍ଣ ଭୂମିକି ତେଜନ୍ତେ । କଳି ପ୍ରବେଶିଲା ତୁରିତେ ।
ତିରିଶି ବର୍ଷ କଳି ଭୋଗେ । ସେ ପରୀକ୍ଷିତଙ୍କର ଆଗେ ।
ଭାଦ୍ରବ କୃଷ୍ଣ ନବମୀରେ । ଏ ଶାସ୍ତ୍ର କହିଲେ ତତ୍ପରେ ।
ରାଜାଙ୍କ ଶ୍ରବଣ ଅନ୍ତରେ । କଳିର ଦ୍ୱି ଶତ ବର୍ଷରେ ।
ଜେଷ୍ଠମାସରେ ଶୁକ୍ଳ ଗତ । ନବମୀ ଦିନରେ ଏ ଶାସ୍ତ୍ର ।
ଗୋକର୍ଣ୍ଣ ସପ୍ତାହ ବିଧିରେ । କହିଲେ ଭକ୍ତି ମାନସରେ ।
ଏ ଅନ୍ତେ କଳି ତିନି ଶତ । ବର୍ଷର ଷ[illegible] ଅଷ୍ଟଯୁତ ।
ତୁଅନ୍ତେ କାର୍ତ୍ତିକ ମାସରେ । ଶୁକ୍ଳ ନବମୀ ତିଥିରେ ।
ବ୍ରହ୍ମାଙ୍କ ନନ୍ଦୁ ସ୍ୱର ସୁତ । ବଖାଣ କଲେ ଏ ଜଗତେ ।
ଏମନ୍ତ ପୁଚ୍ଛିଲ ଯା ମୋତେ । ସକଳ କହିଲି ଅଗ୍ରତେ ।

କଳିରେ ଭାଗବତ କଥା । ନାଶ ଲଭିବ ହେଉ ନ୍ୟଥା ॥
ଶ୍ରୀକୃଷ୍ଣ ପ୍ରୀତିକି କରଇ । ସକଳ ପାପ ବିନାଶଇ ।୨୪୪।
ମୁକ୍ତି ସାଧନର କାରଣ । ଭକ୍ତି ବିକାଶ କରେ ପୁଣ ॥
ଏମନ୍ତ କଥା ଉକ୍ତିମକୁ । ଯେ ସନ୍ତ ଜନେ ଶୁଣିମାତ୍ରୁ ॥
ବହୁତ ଆଦର କରନ୍ତ । ଏ ଭକ୍ତ ବନ୍ଧନ ଛେଦନ୍ତ ॥
ଏ ଲୋକେ କୃତାର୍ଥ କଳନା । କର ତେନ ସ୍ୱାଙ୍କ ଚଳମନା
ପାଶ ମୃତ୍ୟୁର ଛେଚୁ ଯଉ । ଦୂତ ଚରଣଙ୍କୁ ସେବି କରୁ ।
କଣ୍ଠମୂଳରେ ତାହାଙ୍କର । ଧରେ କହନ୍ତି ଦଣ୍ଡଧର ॥
ଶ୍ରୀହରି କଥାରେ ନିମଗ୍ନ । ଏମନ୍ତ ହେଉ ସାଧୁ ଜନ ॥
ନ ଯିବ ପଛେ ତାହାଙ୍କର । ମୁଁ ନୋହେ ତାହାଙ୍କ ଈଶ୍ୱର
ବିଷ୍ଣୁ ଭକତ ହେଉଁ ଜନ । ଜାଣ ମୁଁ ତାହାଙ୍କ ଅଧୀନ ॥
ସେହି ଜନ ଅପାର ସଂସାରେ । ବହନ୍ତି ବିଷ୍ଣୁ ବଡରେ ॥
ଆକୁଳ ଚିତ୍ତ ଉନ୍ମୋଚନ । ଶୁଣନ୍ତି ମୁକ୍ତିର କାରଣେ ॥
ଏ ଶୁଭ ଶାସ୍ତ୍ର ସୁଧା ରସ । ପାନ କରଣ କର ତୋଷ ॥
ବ୍ୟର୍ଥେ କି କାର୍ଯ୍ୟ କୁ ପନ୍ଥାରେ । ପତନ ଭ୍ରମନ୍ତି ସଂସାରେ
ଏଣୁ ଶ୍ରୀ ଭାଗବତ ଶାସ୍ତ୍ର । ଶ୍ରବଣ ମୁକ୍ତି ହୁଏ ଜାତ ॥
ଏ କଥା ଲୋକେ ଜଣା ଅର୍ଥେ । ଯନ୍ତ୍ରେ ଛାପି ପଢନ୍ତିତେ ।
ଏଣୁ ଏ ସାଧୁ ଜନମାନେ । ଏ ଗ୍ରନ୍ଥେ ରସ ନଶି ଦେବେ ॥
ପଣ୍ଡିତ ଭକ୍ତ ଜନ ତ୍ରାସ । ଲଭିବ ଗୋଲୋକରେ ବାସ ॥
ସଂସାର ସିନ୍ଧୁକୁ ଏ ନାବ । କହିଲେ ପଦ୍ମନାଭ ଦେବ ॥

ଇତି ଶ୍ରୀ ପଦ୍ମପୁରାଣେ ଉତ୍ତରଖଣ୍ଡେ ଶ୍ରୀଭାଗବତ ମହାତ୍ମ୍ୟ ନିରୂପଣେ ନାମ ଷଷ୍ଠମ ଅଧ୍ୟାୟଃ ॥

